ବାଳବିନୋଦ ଗ୍ରନ୍ଥମାଳା ୨୮

# ଲବ କୁଶ



# LAVA KUSA

ପ୍ରଥମ ମୁଦ୍ରଣ



PRINTED & PUBLISHED

BY

**The Students' Store**

AT THE STORE PRESS

BERHAMPUR

1930

ପାଞ୍ଚ ଅଣା

As. 5

# ଷ୍ଟୋର ଗ୍ରନ୍ଥମାଳା

| | | | |
|---|---|---|---|
| ୧ | ଭକ୍ତିଯୋଗ | ଶ୍ରୀ ଗୋଦାବରୀଶ ମହାପାତ୍ର | ଟ ୧ ।୵ |
| ୨ | ଶିଶୁଭକ୍ତ (୩ୟ ସଂସ୍କରଣ) | ଶ୍ରୀ ରାମଚନ୍ଦ୍ର ଆଚାର୍ଯ୍ୟ ବି.ଏ | ଟ ୦ ୳ |
| ୩ | ପ୍ରଣୟପ୍ରବାହ(ଉପନ୍ୟାସ) | ,, | ଟ ୧ । |
| ୪ | କମଳକୁମାରୀ ,, | ,, | ଟ ୧ ୳ |
| ୫ | ଘରଓଡ଼ିଆ ,, | ,, | ଟ ୧ । |
| ୬ | ହିତକଥା ୧ମ ଭାଗ (ମିତ୍ରଲାଭ) | ,, | ଟ ୦ ।୵ |
| ୭ | ,, ୨ୟ ଭାଗ (ସୁହୃଦ୍‌ଭେଦ) | ,, | ଟ ୦ ୳ |
| ୮ | ,, ୩ୟ ଭାଗ (ବିଗ୍ରହ) | ,, | ଟ ୦ ୳ |
| ୯ | ବେତାଳ କଥା | ,, | ଟ ୦ ୵ |
| ୧୦ | ଦ୍ରୌପଦୀ | ଶ୍ରୀ ବାସୁଦେବ ମହାପାତ୍ର | ଟ ୦ ୳ |
| ୧୧ | ଶାନ୍ତିଧାରା | ,, | ଟ ୦ ୴ |
| ୧୨ | ଦାସତ୍ୱ ମୋଚନ | ଶ୍ରୀ ଗୋଦାବରୀଶ ମିଶ୍ର | ଟ ୧ ୳ |
| ୧୩ | ବତ୍ରିଶ ସିଂହାସନ | ଶ୍ରୀ ଗଣପତି ପତି | ଟ ୦ ୳୵ |
| ୧୪ | ଚୈତନ୍ୟ ଦେବ | ,, | ଟ ୦ ୳ |
| ୧୫ | ଅର୍ଜୁନ | ,, | ଟ ୦ ୳୵ |
| ୧୬ | ଭୀଷ୍ମ | ଶ୍ରୀ ବନମାଳୀ ମିଶ୍ର କାବ୍ୟତୀର୍ଥ | ଟ ୦ ୳ |
| ୧୭ | ମେବାର | ଶ୍ରୀ ଶିବପ୍ରସାଦ ଦାଶ | ଟ ୧ । |
| ୮ | ମାରବାର | ,, | ଟ ୦ ୴ |
| ୯ | ପତ୍ରମାଳା (ପଦ୍ୟ କାବ୍ୟ) | ଶ୍ରୀ ନୀଳକଣ୍ଠ ରଥ | ଟ ୦ ।୵ |
| ୨୦ | ଦାନ ଦର୍ପଣ (କର୍ଣ୍ଣ) | ,, | ଟ ୦ । |
| ୨୧ | ,, (ହରିଶ୍ଚନ୍ଦ୍ର) | ,, | ଟ ୦ । |
| ୨୨ | ବିଲ୍ୱମଙ୍ଗଳ | ଶ୍ରୀ କୃଷ୍ଣଚନ୍ଦ୍ର କର | ଟ ୦ ୴ |
| ୨୩ | ଯଯାତି | ଶ୍ରୀ ଶ୍ରୀକଣ୍ଠ ଶତପଥୀ | ଟ ୦ ୳ |
| ୨୪ | ପ୍ରବନ୍ଧସାର | ଶ୍ରୀ ଜଗବନ୍ଧୁ ସିଂହ | ଟ ୧ ୲ |
| ୨୫ | ଭ୍ରାତୃଭକ୍ତି (ପଦ୍ୟ) | ଶ୍ରୀ ନିତ୍ୟାନନ୍ଦ ବହିଦାର | ଟ ୦ ।୵ |
| ୨୬ | ନେପୋଲିୟନ | ଶ୍ରୀ ବନମାଳୀ ପଣ୍ଡା | ଟ ୧ |
| ୨୭ | ପଞ୍ଚବୀର | ଶ୍ରୀ ଗୋଦାବରୀଶ ମିଶ୍ର | ଟ ୦ ୴ |



# ଲବ କୁଶ



## ସୀତାଙ୍କ ବନବାସ

ଲଙ୍କାର ରାକ୍ଷସରାଜା ରାବଣଙ୍କୁ ଯୁଦ୍ଧରେ ମାରି, ରାମଚନ୍ଦ୍ର ଲକ୍ଷ୍ମଣ ଓ ସୀତାଙ୍କ ସଙ୍ଗେ ଅଯୋଧ୍ୟାକୁ ବାହୁଡ଼ିଲେ । ଭରତଙ୍କୁ ରାଜ୍ୟର ଯୁବରାଜ କରି ବଡ଼ ଆନନ୍ଦରେ ପ୍ରଜା ପାଳିବାକୁ ଲାଗିଲେ । ସୁଖ ଶାନ୍ତିରେ ଏପରି କେତେ ଦିନ କଟିଲା ।

ଥରେ ଅଯୋଧ୍ୟାରେ କନ୍ତାର ପଡ଼ିଲା । ଦିନେ ଜଣେ ମନ୍ତ୍ରୀ ରାମଚନ୍ଦ୍ରଙ୍କ ଛାମୁରେ ଯାଇ ଜଣାଇଲେ, "ମହାରାଜ, ସୀତା ରାବଣ ଘରେ ଦଶ ମାସ ଥିଲେ । ତାଙ୍କୁ ଆପଣ ଗ୍ରହଣ କରି ଘୋର ପାପ, ଅନ୍ୟାୟ କରିଛନ୍ତି । ଏଣୁ ରାଜ୍ୟରେ କନ୍ତାର ପଡ଼ିଛି, ଲୋକେ ଖାଇବାକୁ ପିଇବାକୁ ନ ପାଇ ହନ୍ତସନ୍ତ ହେଲେଣି । ଲୋକମାନଙ୍କ ମଙ୍ଗଳ ପାଇଁ ରାଣୀଙ୍କୁ ଛାଡ଼ି ଦେବା ଭଲ ।"

ଏ କଥା ଶୁଣି ରାମଚନ୍ଦ୍ର ଆଶ୍ଚର୍ଯ୍ୟ ହୋଇଗଲେ, କିନ୍ତୁ ଜବାବ ଦେଇ ପାରିଲେ ନାହିଁ । ଏକାଲା ବସି ଭାବିଲେଣି ଢଳେ । ସେ ଦିନ ସନ୍ଧ୍ୟାବେଳେ ରାମ ନଗର ବୁଲି ବାହାରିଲେ । ନଗର ବାହାରେ ରାଜାଙ୍କର ଧୋବା ଘର । ଧୋବା ଘର ପାଖରେ ଛିଡ଼ା ହୋଇ ରାମଚନ୍ଦ୍ର ଯାହା ଶୁଣିଲେ, ସେଥିରେ ତାଙ୍କ ଜ୍ଞାନ ହଜିଗଲା । ଧୋବାଟି ବୁଢ଼ା—ଘରେ

ଧୋବା ଧୋବଣୀ ଦୁ' ଜଣ । ସେମାନଙ୍କର ଗୋଟିଏ ମାତ୍ର ଝିଅ । ଝିଅ ଶାଶୁ ଘରକୁ ଗଲାଣି । କେତେ ଦିନ ହେଲା ଝିଅ ଦୁଆପାଳି ଥର ଆସି ମା ଘରେ ଅଛି । ଅସିବାର ପ୍ରାୟ ଦୁ' ମାସ ହୋଇଗଲାଣି । ବୂଢ଼ାର ଜ୍ୱାଇଁ ଭାର୍ଯ୍ୟାକୁ ଡାକି ନେବା ପାଇଁ ଦି ତିନି ଥର ଲୋକ ପଠାଇଲା । ତା ଭାର୍ଯ୍ୟା ଶାଶୁଘରକୁ ଚଞ୍ଚଳ ଫେରିବାକୁ ଧରି ବସିଲା । ମାତ୍ର ସେ ତ ବାପା ମା ର ଗୋଟିଏ ବୋଲି ଟେହ୍ଲାଦୁଲା ଝିଅ । ସେମାନେ ତାକୁ ଆଦରରେ ବଳେଇ ରଖିଛନ୍ତି । ଏଥିରେ ଧୋବାର ଜ୍ୱାଇଁ ରାଗି ଗଲା । ଅଉ ଭାର୍ଯ୍ୟାକୁ ଡାକି ନେବ ନାହିଁ ବୋଲି ହଟ ବସିଲା ।

ଏ କଥା ଶୁଣି ଧୋବା ବୁଢ଼ା ଆଉ ତା ଭାର୍ଯ୍ୟା ମୁଣ୍ଡରେ ଯେପରି ଚଡ଼କ ପଡ଼ିଲା । ବୁଢ଼ା ସେ ଦିନ ଜ୍ୱାଇଁକି ଡକାଇ ତାକୁ ଶାନ୍ତ କରିବାକୁ ଗୁଡ଼ାଏ କଅଁଳେଇ ସାଙ୍କୁଳେଇ କହିଲା—'ପୁଅ, ଝିଅ ବାହାରିଯିବାକୁ ବସିଛି, ଅମେ ତାକୁ ବଳେଇ ରଖିଛୁଁ । ଯଦି ଏଥିରେ ଦୋଷ ହୋଇ ଥାଏ, ସେଇ ଦୋଷ ଅମର । ଦୋଷ ଧର ନାହିଁ, କ୍ରୋଧ କର ନାହିଁ । ତୁମ ଭାର୍ଯ୍ୟାକୁ ଏଥର ନିଅ ।' ଜ୍ୱାଇଁ ରାଗରେ ପାଟି କରି କହିଲା,—'ନା ତା କେବେ ହେବ ନାହିଁ । ସେ ଯେତେବେଳେ ମା ଘରେ ଝିଅ ହୋଇ ଥିଲା, ମୁଁ ପଦେ ହେଲେ କହୁ ଥିଲିକି ? ଶାଶୁଘରେ ବୋଉ ହେଲା ଉତ୍ତାରୁ, ଏତେ ଦିନ ମା' ଘରେ ଅସି ରହିବାଟା ବଡ଼ ଦୋଷ । ତାର ଏତେ ଗର୍ବ—ମୁଁ କେତେ ଥର ଡକାଇଲେ ମଧ୍ୟ ଯାଉ ନାହିଁ ! ଅଛା ସେପରି ହେଉ, ସେ ଏଇଠି ଏକା ରହୁ, ଆମ ଘରକୁ ଫେରି ଯିବା ଆଉ ଦରକାର ନାହିଁ । ମୁଁ ତାକୁ ଆଉ ନେବି ନାହିଁ ।'

ଦୁଃଖ ଆଉ ଭୟରେ ବୁଢା ବୁଢ଼ୀଙ୍କର ପାଟି ଫିଟିଲା ନାହିଁ — ମୁଣ୍ଡ ଧରି ବସି ପଡ଼ିଲେ । ଝିଅ ଉଠି ମୁହଁ ଛଣ୍ଟାଡ଼ି କହିଲା— 'ହଇଏ, ତମକୁ ଏକା କଥା କହିବାର ଜଣା, ଆଉ କାହାକୁ ଜଣା ନାହିଁ ପରା ।

ତୁମ କଥା ତୁମକୁ ଏକା ସୁନ୍ଦର ! ଛିଅ ମା ଘରେ କେବେ କ୍ଷଣ ରହେ ନାହିଁ ? କେତୋଟା ଦିନ ଆସି ରହୁଛ ବୋଲି ମୁଁ ଅସତୀ ହୋଇଗଲି ? ତମ ଭଉଣୀମାନେ କେବେ ମା ଘରକୁ ଯାଉ ନାହାନ୍ତି ? ମୁଁ ହେଲେ ମା'ଘରେ ଅଛି—ସୀତାଠାକୁରାଣୀ ତ ଦଶ ମାସ କାଳ ପର ଘରେ ଥିଲେ । ରାମଚନ୍ଦ୍ର କମିତି ତାଙ୍କୁ ଅନ୍ତଃପୁରେ ଫେରାଇ ଆଣିଲେ ? ରାଜାଙ୍କଠୁଁ ତମେ ବଡ଼ ପଣ୍ଡା !"

ତାହାର ସ୍ୱାମୀ ମୁହଁ ଲାଲ କରି ଦାନ୍ତ କଡ଼ମଡ଼ କରି ବୋଇଲା—'ରାମ ରଜା ବୋଲି ଯେମିତି କରି ଦେଲେ, ଲୋକେ ତାଙ୍କ କଥାକୁ ଅପସନ୍ଦ କରୁନାହାନ୍ତି । ମୁଁ କୋ ଗାଈର ଗୋବର । ମୁଁ ତତେ ଘରକୁ ନେଲେ ଗାଁ ଲୋକେ ମତେ କୁଳମନା କରିଦେବେ ।' ଏ ସବୁ କଥା ଶୁଣି, ଲାଜରେ ରାମଚନ୍ଦ୍ର ମୁହଁ ତଳକୁ କରି ଦେଲେ । ସେଇକ୍ଷଣି ସେ ଚରମାନଙ୍କୁ ବାହୁଡ଼ାଇଲେ । ଭାଇମାନଙ୍କୁ ପାଖକୁ ଡକାଇ ତହିଁ ଆର ଦିନ ସକାଳେ ସୀତାଙ୍କୁ ବଣକୁ ପଠାଇ ଦେବା ପାଇଁ ଆଜ୍ଞା କଲେ । ଭାଇମାନେ ଚମକି ପଡ଼ିଲେ । ସେମାନଙ୍କ ମନରେ ଭାରି ଦୁଃଖ ହେଲା । ସୀତାଙ୍କୁ ବଣକୁ ନ ପଠାଇବାକୁ ସମସ୍ତେ କେତେ କାକୁତି ମିନତି କଲେ । ମାତ୍ର ରାମ ସେ କଥାରେ କାନ ଦେଲେ ନାହିଁ । ତାଙ୍କର ସେଇ ଗୋଟିଏ କଥା—ସୀତାଙ୍କୁ ଛାଡ଼ି ଦେବାକୁ ହେବ । କହିଲେ, 'ମୁଁ ଭଲ କରି ଜାଣେ, ସୀତାଙ୍କର ଟିକିଏ ହେଲେ କଳଙ୍କ ନାହିଁ । ମାତ୍ର କଣ କରିବ—ଲୋକେ ତ ଓଲଟା ବୁଝିଛନ୍ତି । ପ୍ରଜାଙ୍କୁ ସନ୍ତୁଷ୍ଟ କରିବା ମୋର ଧର୍ମ । ଏ ଅପବାଦ ଆଉ ସହି ପାରିବି ନାହିଁ ।'

ଏହାର କେତେକ ଦିନ ତଳେ, ବନକୁ ଯାଇ ଋଷିମାନଙ୍କ ଆଶ୍ରମ ଦେଖିବାକୁ ସୀତା ମନ କରିଥିଲେ । ମନ କଥା ସେ ରାମଙ୍କୁ ଜଣାଇ ଥିଲେ । ରାମ ମଧ୍ୟ ସେ କଥାରେ ରାଜି ହୋଇଥିଲେ । ଏବେ ସୁବିଧା

ପଡ଼ିଲା । ଋଷି ଆଶ୍ରମ ଦେଖି ଯିବେ ବୋଲି ସୀତାଙ୍କୁ କହାଗଲା । ସୀତାଙ୍କ ଆନନ୍ଦ କହିଲେ ନ ସରେ !

ପରଦିନ ବଡ଼ ସକାଳେ ରଥ ସିଂହଦ୍ୱାରରେ ଆସି ଠିଆ ହେଲା । ସୀତା ପତି ଓ ଶାଶୁମାନଙ୍କୁ ଜୁହାର ହୋଇସାରି ଆନନ୍ଦରେ ରଥରେ ବସିଲେ । ଲକ୍ଷ୍ମଣ ରଥ ଚଳାଇଲେ । ଯାଉ ଯାଉ ସୀତା ବାଟରେ କେତେ ଅଶୁଭ କଥା ଦେଖିଲେ । ରଥ ଆଗରେ ବିଲୁଆମାନେ ରଡ଼ି ଛାଡୁଥାନ୍ତି । ରଥର ଦୁଇ ପଟା ସାପଗୁଡ଼ାଏ ଦିଶିଲେ । ରାମଚନ୍ଦ୍ର-ଙ୍କର କାଳେ ଅମଙ୍ଗଳ ହେବ ବୋଲି ସୀତାଙ୍କ ମନରେ ଛନକା ପଶିଲା । ସେ କାନ୍ଦି ପକାଇଲେ । ସେ ମନେ ମନେ ରାମଙ୍କ ମଙ୍ଗଳ ଲାଗି ଈଶ୍ୱରଙ୍କୁ ପ୍ରାର୍ଥନା କଲେ । ଦେଖୁଁ ଦେଖୁଁ ରଥ ଗଙ୍ଗା ତୀରରେ ପହଞ୍ଚିଲା । ଲକ୍ଷ୍ମଣ ଓ ସୀତା ଗୋଟିଏ ନା'ରେ ବସି ନଦୀର ଆର କୂଳକୁ ଗଲେ । ନଦୀର ଆର କୂଳକୁ ଲାଗି ଭୟଙ୍କର ବନ । ଦୁହେଁ ଯେଉଁଠି ପହଞ୍ଚିଲେ ସେଠାରୁ ପ୍ରାୟ ଦୁଇ କୋଶ ଦୂରରେ ବାଲ୍ମୀକି ମୁନିଙ୍କ ଆଶ୍ରମ ।

ନାବରୁ ଓହ୍ଲାଇବାକ୍ଷଣି ସୀତାଦେବୀ ଗୋଟିଏ ଗଛତଳେ ବସିଲେ । ଲକ୍ଷ୍ମଣ କଥାଟା ଆଉ ଅଧିକ ସମୟ ଘୋଡ଼ାଇ ରଖିବାକୁ ଇଚ୍ଛା କଲେ ନାହିଁ । ସେ କାନ୍ଦି କାନ୍ଦି ଠିଆ ହୋଇ ହାତ ଯୋଡ଼ି କହିଲେ, 'ମା', ଆମେ ଏ ବନକୁ ଆସିବାର କାରଣ ଏତେ ବେଳ ଯାଏ କହି ନ ଥିଲି । ଏବେ କହୁଛି—ଦୋଷ ଧରିବ ନାହିଁ । ତୁମେ ଦଶ ମାସ କାଳ ରାବଣ ଘରେ ଥିଲ । ତୁମକୁ ଫେରି ଆଣିବାଟା ପ୍ରଜାମାନେ ପସନ୍ଦ କରୁ ନାହାନ୍ତି । ଲୋକ ଅପବାଦ ଭୟରେ ଶ୍ରୀରାମ ତୁମକୁ ଏବେ ବନକୁ ପଠାଇ ଦେଇଛନ୍ତି । ମାତ୍ର ତୁମେ ନିର୍ଦ୍ଦୋଷ ବୋଲି ସେ ଜାଣନ୍ତି । ଲୋକଙ୍କୁ ତୃପ୍ତ କରିବା ପାଇଁ ସେ ଏ ନିଷ୍ଠୁର କାର୍ଯ୍ୟ କରିଛନ୍ତି । ଏ ଭାର ମୋତେ ଦେଇଥିଲେ— କ୍ଷମା କର । ମୋର କାମ ମୁଁ କରିଛି ।

ଏଣିକି ବନବାସ ହଅ । ପାଖରେ ବାଲ୍ମୀକି ଋଷିଙ୍କ ଆଶ୍ରମ, ତୁମେ ସେଠାକୁ ଯାଇ ସୁଖରେ ରହିବ ।'

ହଠାତ୍ ଏ କଥା ଶୁଣି ସୀତାଙ୍କର ପ୍ରାଣ ଫାଟିଗଲା । ତାଙ୍କୁ ଚତୁର୍ଦ୍ଦିଗ ଅନ୍ଧାର ଦେଖାଗଲା । ତାଙ୍କ ତୁଣ୍ଡରୁ ଆଉ କଥା ବାହାରିଲା ନାହିଁ । ମୂର୍ଚ୍ଛିତ ହୋଇ ସେ ତଳେ ପଡ଼ିଗଲେ । ଲକ୍ଷ୍ମଣ ସୀତାଙ୍କୁ ପ୍ରଦକ୍ଷିଣ କରି, ତାଙ୍କ ଉଦ୍ଦେଶ୍ୟରେ ହାତ ଯୋଡ଼ି ନା'ରେ ନଈର ଏ କୂଳକୁ ବାହୁଡ଼ିଲେ । ପରେ ବଡ଼ ଦୁଃଖରେ ଅଯୋଧ୍ୟା ଆଡ଼କୁ ଚଞ୍ଚଳ ରଥ ଚଳାଇ ନେଲେ ।



## ଲବକୁଶଙ୍କ ଜନ୍ମ

ବନବାସବେଳେ ସୀତାଙ୍କର ପାଞ୍ଚ ମାସ ଗର୍ଭ । ଏ ଅବସ୍ଥାରେ ନିଜ ପ୍ରାଣରୁ ଅଧିକ ଭାର୍ଯ୍ୟାଙ୍କୁ ଏତେ କଷ୍ଟ ଦେବା କଥା କେବେ କେଉଁଠି ଶୁଣା ନ ଥିଲା । କିଛି କ୍ଷଣ ପରେ ସୀତା ଚେତନା ପାଇ ଉଠିଲେ । ଦେଖିଲେ, ପାଖରେ ଲକ୍ଷ୍ମଣ ନାହାନ୍ତି—ଦୂରରେ ମଧ୍ୟ ରଥ ଦିଶୁ ନାହିଁ । ସେତେବେଳେ ତାଙ୍କ ପ୍ରାଣରେ ଯେଉଁ ଦୁଃଖ ହେଲା, ତାହା ଆଉ ଲେଖି ହେବ ନାହିଁ । ସେ ତାଟକା ହୋଇ ହରିଣୀ ପରି ଚାରି ଆଡ଼େ ଥରେ ଅନାଇଲେ । ଯେଉଁ ଆଡ଼େ ଅନାଇବ, ଭୟଙ୍କର ବନ । ମନୁଷ୍ୟର ଗନ୍ଧ ବର୍ଣ୍ଣ ଦିଶୁ ନାହିଁ । ହାତୀମାନେ ପଲ ବାନ୍ଧି ବନ କମ୍ପାଇ ଚାଲୁଛନ୍ତି । ବାଘ ସିଂହମାନେ ଘୋର ଗର୍ଜ୍ଜନ କରି ବୁଲୁଛନ୍ତି । ଗଧିଆ, ଗଣ୍ଡା, ବଣ ମଇଁଷି, ମୃଗ, ବଳଅ ଇତ୍ୟାଦି ଜନ୍ତୁ ଏଣେ ତେଣେ ଧାଉଁଛନ୍ତି । ସାପମାନେ ସଁ ସଁ ଶବ୍ଦ କରି ପାଣି ପିଇବାକୁ ନଈକି ଗଡ଼ୁଛନ୍ତି । ଏ ସବୁ ଦେଖି ସୀତା ଭୟରେ ଥରିଲେ ।

ତାଙ୍କ ଆଉ ବୁଦ୍ଧି ଦିଶିଲା ନାହିଁ—କଣ କରିବେ, କେଉଁଠିକି ଯିବେ, କିଛି ବୁଝି ପାରିଲେ ନାହିଁ । ତାଙ୍କର ସେତେବେଳେ କାନ୍ଦ ଛଡ଼ା ଆଉ କେହି ସହାୟ ନ ଥିଲେ । ସେ ବାହୁନି ବାହୁନି ହୃଦୟ ଫଟାଇ କାନ୍ଦିବାକୁ ଲାଗିଲେ । କାନ୍ଦି କାନ୍ଦି ବନ ପର୍ବତକୁ କନ୍ଦାଇଲେ, ଗଛ ପତ୍ରକୁ କନ୍ଦାଇଲେ, ପଶୁ ପକ୍ଷୀ, ନଈ ନାଳ ସମସ୍ତଙ୍କୁ କନ୍ଦାଇଦେଲେ । ଆଖିରୁ ବରବର ଲୁହ ଖସି ପଡ଼ୁଛି, ଉପରେ ହାତ ଗୋଡ଼ ଥରି ଉଠୁଛି । ଲୁହରେ ତାଙ୍କର ପିନ୍ଧିବା ଶାଢ଼ୀ, ବସିବା ଜାଗା ଭିଜି ଗଲାଣି । ଆଖି ବୁଜି କାନ୍ଦି କାନ୍ଦି ବିକଳ କଣ୍ଠରେ କହିଲେ—'ହେ ଶ୍ରୀ ରାମ ! ମୁଁ ଅବଳା, ମୋର ବଳ ନାହିଁ । ତୁମର ପାଦପଦ୍ମହିଁ ମୋର ଏକମାତ୍ର ଆଶା ଭରସା । ରକ୍ଷା କର । ହାୟ ! ମା'ଗୋ ! କେଉଁଠି ଅଛ ? ଆହା, ମୋତେ କେତେ ଯତ୍ନ ଆଦରରେ ପାଳି ଥିଲ । ମୁଁ ଏବେ ଏ ଘୋର ବଣରେ ଅନାଥା ହୋଇ ପଡ଼ିଛି, ଆସ, ରକ୍ଷା କର ।'

ଏପରି ସେ କେତେ ଯେ କାନ୍ଦିଲେ ତା'ର ସୀମା ନାହିଁ । ଆତ୍ମହତ୍ୟା କରିବାକୁ ମନ ବଳାଇଲେ । ମାତ୍ର କରି ପାରିଲେ ନାହିଁ । ଗର୍ଭବତୀ ହୋଇ ନ ଥିଲେ ସେ ନିଶ୍ଚୟ ନଈରେ ବୁଡ଼ି ମରି ଥାନ୍ତେ । ଆତ୍ମଘାତୀ ହେଲେ ରାମଚନ୍ଦ୍ରଙ୍କ କୁଳ ବୁଡ଼ିବ । ଏ ଉପରେ ସେ ହୃଦୟକୁ ପଥର କରି ଦୁଃଖ କଷ୍ଟ ସହିଲେ । ବର୍ଷେ ନାହିଁ, ଦି ବର୍ଷ ନାହିଁ—ପୂରା ଚଉଦ ବର୍ଷ କାଳ ସେ ପତିସଙ୍ଗେ ବନବାସ କରିଥିଲେ ସତ, ଦଶ ମାସ କାଳ ଅସୁର ଘରେ ବନ୍ଦୀ ହୋଇ ଥିଲେ ସତ; ମାତ୍ର ସେତେବେଳେ ମନରେ ଏତେ କଷ୍ଟ ହୋଇ ନ ଥିଲା—ପ୍ରାଣରେ ଏତେ ବ୍ୟଥା ଲାଗି ନ ଥିଲା ।

ସୀତା ବାଲ୍ମୀକି ଆଶ୍ରମକୁ ଯିବାକୁ ଚେଷ୍ଟା କଲେ । ଉଠି ଚାଲିବାକୁ ଆରମ୍ଭ କଲେ । କୋମଳ ସୁକୁମାର ଦେହ ଭାରି ଦୁର୍ବଳ ହୋଇ ପଡ଼ିଛି ।

ଉପରୁ ଝାଳ ଛୁଟି ପଡ଼ୁଛି । ବାଟ ଦିଶୁ ନାହିଁ । ତଥାପି କଷ୍ଟରେ ଧୀରେ
ଧୀରେ ଚାଲିବାକୁ ଲାଗିଲେ । ଖଣ୍ଡେ ଦୂର ଯାଇଛନ୍ତି କି ନାହିଁ, ଗୋଟିଏ
ଗଛ ଟିଅ ଝୁଣ୍ଟି ତଳକୁ ପଡ଼ିଗଲେ । ପୁଣି ମୂର୍ଚ୍ଛା ! ସେତେବେଳେ
ବାଲ୍ମୀକିଙ୍କର ଜଣେ ଶିଷ୍ୟ ଆଶ୍ରମ ପାଇଁ ଫଳ ମୂଳ ନେବାକୁ ସେଠାକୁ
ଆସିଲେ । ହଠାତ୍ ସୀତାଙ୍କୁ ଦେଖି ସେ ଆଶ୍ଚର୍ଯ୍ୟ ହୋଇଗଲେ । ଦେଖିଲେ,
ସୀତା ସର୍ବାଙ୍ଗସୁନ୍ଦରୀ ଯୁବତୀ—ଚେତନା ହରାଇ ପଡ଼ିଛନ୍ତି । ପାଦ ଫୁଲି
ଯାଇଛି, ହାତରୁ ରକ୍ତ ଗଡ଼ୁଛି । ସେ ସେଠାରେ ଆଉ ଛିଡ଼ା ହୋଇ
ପାରିଲେ ନାହିଁ । ଏକ ନିଶ୍ୱାସରେ ଧାଇଁ ଯାଇଁ ଋଷିଙ୍କି ଏ କଥା
ଜଣାଇଲେ ।

ବାଲ୍ମୀକି ଧ୍ୟାନରେ ବସି ସୀତାଙ୍କର ସମସ୍ତ କଥା ବୁଝି ପାରିଲେ ।
ଯୋଗ ବଳରେ ସେ ତିନି ଲୋକର ଘଟନା ଜାଣି ପାରନ୍ତି । ଆଉ ବିଳମ୍ବ
ନ କରି ସେ ସୀତାଙ୍କ ନିକଟକୁ ଧାଇଁ ଗଲେ । ସେତେବେଳକୁ ସୀତା
ଚେତନା ପାଇ ବସିଛନ୍ତି । ଋଷିଙ୍କି ଦେଖିବା ମାତ୍ରକେ କେଜାଣି କାହିଁକି
ତାଙ୍କ ମନରେ ଆଶା, ଆନନ୍ଦ ଅଙ୍କୁର ଉଠିଲା । ଋଷିଙ୍କ ତେଜରେ
ତାଙ୍କର ସକଳ ଶୋକ ଚିନ୍ତା ଧୋଇଗଲା । ତାଙ୍କର ମନେ ହେଲା, ସତେ
ଯେପରି ସ୍ୱୟଂ ଜନକ ଝିଅକୁ ପ୍ରବୋଧ ଦେବାକୁ ଆସିଛନ୍ତି । ଋଷି
ପାଖକୁ ଯାଇ ହସ ହସ ମୁଖରେ ମଧୁର କୋମଳ କଣ୍ଠରେ ସୀତାଙ୍କୁ
କହିଲେ—"ସୀତେ ! ତୁମେ କିଏ, ରାମ ତୁମକୁ ଏଠାକୁ କାହିଁକି
ପଠାଇଛନ୍ତି, ସେ ସବୁ କଥା ମୁଁ ଯୋଗ ବଳରେ ଜାଣି ପାରିଛି । ତୁମେ
ପୁଣ୍ୟବତୀ, ଗୁଣବତୀ । ପାପ ତୁମକୁ ଛୁଇଁ ନାହିଁ । ଦୁଃଖ କର ନାହିଁ ।
ତୁମର କେବେ ଅମଙ୍ଗଳ ହେବ ନାହିଁ । ଆଶ୍ରମକୁ ଚାଲ । ସେଠାରେ
ଅନେକ ତପସ୍ୱିନୀ ଅଛନ୍ତି । ସେମାନେ ତୁମକୁ ଝିଅ ପରି ପାଳିବେ,
ସନ୍ଦେହ ନାହିଁ । ତୁମର କୌଣସି କଷ୍ଟ ହେବ ନାହିଁ । ନିଜ ଘରେ
ଯେପରି ଥିଲ, ତା'ଠୁ ବଳି ସୁଖରେ ରହିବ । ଚିନ୍ତା ନାହିଁ, ଚାଲ ।'

ସୀତାଙ୍କ ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ସେ ଆନନ୍ଦରେ ଉଠି ମୁନିଙ୍କର ପଦ ବନ୍ଦନା କଲେ । କରପତ୍ର ଯୋଡ଼ି କହିଲେ—'ମୁନିବର, ଆପଣ ପିତୃତୁଲ୍ୟ । ଆପଣ ଯାହା ଆଜ୍ଞା କରିବେ, କରିବି । ଚାଲନ୍ତୁ ।' ବାଲ୍ମୀକି ସୀତାଙ୍କୁ ସଙ୍ଗେ ନେଇ ଆଶ୍ରମରେ ପହଞ୍ଚିଲେ । ସେ ମୁନିପତ୍ନୀ ଓ ତାଙ୍କ ଶିଷ୍ୟମାନଙ୍କୁ ସୀତାଙ୍କ ପରିଚୟ ଦେଲେ । ପରେ ତପସ୍ୱିନୀମାନଙ୍କ ହାତରେ ସୀତାଙ୍କୁ ଅର୍ପଣ କରି ନିଶ୍ଚିନ୍ତ ହେଲେ । ସୀତାଙ୍କୁ ଦେଖିବାକ୍ଷଣି ଆନନ୍ଦରେ ମୁନିପତ୍ନୀମାନଙ୍କ ପାଦ ଆଉ ତଳେ ପଡ଼ିଲା ନାହିଁ । ସମସ୍ତେ ତାଙ୍କୁ ଘେରି ପକାଇଲେ । ତାଙ୍କୁ ଭକ୍ତିରେ ପ୍ରଣାମ ଓ ପ୍ରେମାଲିଙ୍ଗନ କଲେ ।

ସୀତା ମୁନିପତ୍ନୀ, ମୁନିକୁମାରୀମାନଙ୍କ ସଙ୍ଗେ ପରମ ସନ୍ତୋଷରେ ଦିନ ନେବାକୁ ଲାଗିଲେ । କେହି ତାଙ୍କର ମିତ, ସଖୀ ହେଲା—କେହି ବା ଧର୍ମଭଉଣୀ ହେଲା । ତାଙ୍କର କୌଣସି ଅଭାବ ରହିଲା ନାହିଁ । ଖାଇବା, ପିଇବା, ଶୋଇବା, ବୁଲିବାବେଳେ ସେମାନେ ତାଙ୍କ ସାଥିରେ ଛାଇ ପରି ଥା'ନ୍ତି । ସେମାନଙ୍କ ସଙ୍ଗେ ମଧୁର ଆଳାପ କରି, ସେମାନଙ୍କ ଯତ୍ନ ଆଦରରେ ସୀତା ଦୁଃଖ ଶୋକ ସବୁ ପାସୋରି ଗଲେ, ଶେଷରେ ଅଯୋଧ୍ୟା ବି ଭୁଲିଗଲେ ।

ଏପରି ପାଞ୍ଚ ମାସ ଚାଲିଗଲା । ଗର୍ଭର ଠିକ୍ ଦଶମ ମାସ ଶେଷରେ ସୀତା ଦୁଇ ଗୋଟି ଯାଆଁଳା ପୁଅ ପ୍ରସବ କଲେ । ଆଶ୍ରମ ତମାମ ଆନନ୍ଦ, ଆଶ୍ୱାସନା ଯେପରି ନାଚି ଉଠିଲା । ଏ ଶୁଭ ସମ୍ବାଦ ଶୁଣି ବାଲ୍ମୀକି ଅନ୍ତୁଡ଼ି ଘରକୁ ଧାଇଁଗଲେ । ଦେଖିଲେ, ଦୁଇ ଶିଶୁଙ୍କ ଅପୂର୍ବ ତେଜରେ ଏକ୍ତୁଡ଼ି ଘରଟି ଝଟକୁଛି । ପିଲା ଦିଓଟି ନୂତନ ଚନ୍ଦ୍ର ଭଳି ସୁନ୍ଦର, ସୂର୍ଯ୍ୟ ଅଗ୍ନି ପରି ତେଜସ୍ୱାନ୍ ଦେଖା ଯାଉଛନ୍ତି । ପରମ ଆନନ୍ଦରେ ଋଷି କିଛି ସମୟ ନିଜକୁ ଏକାବେଳକେ ଭୁଲିଗଲେ । ସେ ଅନ୍ତୁଡ଼ି ଘରେ

ସୋଡଶ ଋଷି ବାଳରକ୍ଷା ଶାନ୍ତ କଲେ । ଶିଶୁ ଦୁଇଙ୍କର ନାମ ରଖିଲେ ଲବ, କୁଶ । ପରେ ସେ ବୃଦ୍ଧା ମୁନିପତ୍ନୀମାନଙ୍କ ହାତରେ ସୀତା ଓ ଶିଶୁମାନଙ୍କର ପାଳନଭାର ଦେଲେ ।

ଋଷି-ଆଶ୍ରମରେ ସୀତାଙ୍କର, ନବଜାତ ଶିଶୁମାନଙ୍କର ଯେପରି ଯତ୍ନ କରାଗଲା, ଅଯୋଧ୍ୟାର ଅନ୍ତଃପୁରରେ ବି ସେପରି ହୁଅନ୍ତା କି ନା ସନ୍ଦେହ ।



## ସୁବର୍ଣ୍ଣ ସୀତା

ଆଗେ କହାଯାଇଛି, ଗଙ୍ଗାକୂଳରେ ସୀତାଙ୍କୁ ଛାଡ଼ି ଦେଇ ଲକ୍ଷ୍ମଣ ଅଯୋଧ୍ୟାକୁ ବାହୁଡ଼ିଲେ । ରାଜପ୍ରାସାଦ ଭିତରକୁ ଯାଇ ସେ ଦେଖିଲେ, ରାମଚନ୍ଦ୍ର ଗୋଟିଏ ସାମାନ୍ୟ ଆସନରେ ବସିଛନ୍ତି, ତାଙ୍କ ଆଖିରୁ ଲୁହ ଝର ଝର ବହି ପଡ଼ୁଛି । ବାସି ପଦ୍ମ ଫୁଲ ପରି ରାମଙ୍କର ମୁହଁ ବିବର୍ଣ୍ଣ ଦିଶୁଛି । ଏହା ଦେଖି ଲକ୍ଷ୍ମଣଙ୍କର ପ୍ରାଣ ଶୁଖିଗଲା । ସେ କାନ୍ଦି କାନ୍ଦି ବଡ଼ ଭାଇଙ୍କି ପ୍ରଣିପାତ କଲେ । ସୀତାଙ୍କୁ କିପରି ନେଇ କେଉଁଠି ଛାଡ଼ିଲେ ସେ ସବୁ କଥା ଗୋଟି ଗୋଟି କରି ବୁଝାଇ କହିଲେ ।

ରାମଚନ୍ଦ୍ର କହିଲେ, "ମୁଁ ନିଷ୍ଠୁର ଭାବରେ ସୀତାଙ୍କୁ ଛାଡ଼ି ଦେଇ ବଡ଼ ଅନ୍ୟାୟ କରିଛି । ଜନକମହର୍ଷି ଏହା ଶୁଣି ନିନ୍ଦା କରିବେ । ସୀତା ମୋ ପାଖରୁ କ୍ଷଣେ ଅନ୍ତର ହେଲେ, ତାଙ୍କୁ ଯୁଗେ ପରି ଲାଗୁଥିଲା । ଏବେ ବନରେ ଏକଲା ରହିବେ କିପରି ? ତାଙ୍କ ବିନା ରାଜ୍ୟ, ଧନ, ସିଂହାସନରେ ମୋର ବା କି ସୁଖ ?"

ଲକ୍ଷ୍ମଣ ବିନୟରେ ବୋଇଲେ, 'ପ୍ରଭୁ, ଆମେମାନେ ମନା କରୁଁ କରୁଁ ସୀତାଙ୍କୁ ଛାଡ଼ିଛନ୍ତି । ଏବେ ଶୋକ କରି ବା ଲାଭ କଣ ?

ଯାହାହେଉ ଅଜ୍ଞା ହେଲେ, ଆଜ ଆପଣଙ୍କୁ ନେଇ ଦେବୀଙ୍କ ସଙ୍ଗେ ଦେଖା କରାଇଦେବ ।'

ରାମ:— ଲୋକଙ୍କ କଥାରେ ତ ତାଙ୍କୁ ଛାଡ଼ିଛି । ତାଙ୍କୁ ଦେଖି ଗଲେ ବା ଡ଼କାଇ ଅଣିଲେ ଲୋକେ କହିବେ କଣ ? ନା, ତା'ହେବ ନାହିଁ । ଏବେ ଗୋଟିଏ କାର୍ଯ୍ୟ କର । ଭରତ, ଶତ୍ରୁଘ୍ନଙ୍କୁ ଡ଼ାକ ଅଣ । ତୁମମାନଙ୍କୁ ଗୋଟିଏ କଥା କହିବ ।

ଲକ୍ଷ୍ମଣ ସେହିକ୍ଷଣି ଯାଇ ବଭାଇଙ୍କି ସେଠାକୁ ଡାକ ଅଣିଲେ । ସୁନାରେ ସୀତାଙ୍କର ଗୋଟିଏ ମୂର୍ତ୍ତି ଗଢ଼ିବାକୁ ରାମ ଭାଇମାନଙ୍କୁ ଅଦେଶ କଲେ । କହିଲେ, ସୀତା ନ ଥିବାରୁ ତାଙ୍କୁ ଅଯୋଧ୍ୟା ଶୂନ୍ୟ ଦେଖା ଯାଉଛି— ମୂର୍ତ୍ତି ଦେଖି ଦୁଃଖ ଶୋକ କିଛି ପାସୋରିବେ । ଏହା କହି ସେ ଅଉ ଥରେ କାନ୍ଦ ବସିଲେ । ଭାଇମାନେ ତାଙ୍କୁ ସାନ୍ତ୍ୱନା ଦେଇ ଶାନ୍ତ କରାଇଲେ ।

ରାମଙ୍କ ଅଦେଶରେ ସ୍ୱର୍ଣ୍ଣକାର ଅସିଲା । ଶହେ ମହଣ ସୁବର୍ଣ୍ଣରେ ସୀତାଙ୍କର ସୁନ୍ଦର ମୂର୍ତ୍ତିଟିଏ ତିଆରି କଲା । ସୀତାଙ୍କ ରୂପ ଅଉ ଏ ମୂର୍ତ୍ତିର ରୂପ ମଧ୍ୟରେ କିଛି ପ୍ରଭେଦ ରହିଲା ନାହିଁ । ମୂର୍ତ୍ତିଟି କଥା ମାତ୍ର କହି ପାରୁ ନାହିଁ—ଅଉ ସବୁ ସମାନ । ସତେ ଯେପରି ସୀତା କଥା ନ କହି ହଲଚଲ ନ ହୋଇ ବସିଛନ୍ତି । ମୂର୍ତ୍ତିଟିକୁ ଗୋଟିଏ ସୁନ୍ଦର ଲାଲ ଶାଢ଼ୀ ପିନ୍ଧାଇ ଦେଲେ । ତା ଦେହରେ ନାନା ଗହଣା ଖଞ୍ଜି ଦେଲେ, ସୁଗନ୍ଧ ଚନ୍ଦନ ବୋଳି ଦେଲେ ।

ଏ ଖବର ପାଇ କୌଶଲ୍ୟା, କୈକେୟୀ, ସୁମିତ୍ରା ସେଠାକୁ ଅସିଲେ । ଦେଖିଲେ, ସୁବର୍ଣ୍ଣ ସୀତା । କଥାଟା ବୁଝି ପାରିଲେ ନାହିଁ । ସୀତାଙ୍କୁ ଗଙ୍ଗା ତୀରକୁ ପଠାଇବାର କଥା ସେମାନେ ଜାଣନ୍ତି । ମାତ୍ର

ସୀତାଙ୍କୁ ବନବାସ ଦଣ୍ଡ ଦିଅଯାଇଛି ବୋଲି ଜମାକୁ ଜାଣି ନ ଥିଲେ । ଏ କଥା ଶ୍ରୀରାମ ଭାଇ ଛଡ଼ା ଅନ୍ୟ କେହି ଜାଣି ନ ଥିଲେ । ଲକ୍ଷ୍ମଣଙ୍କ ମୁଖରୁ ସୀତାଙ୍କ ବନବାସ କଥା ଶୁଣି କୌଶଲ୍ୟା କାନ୍ଦି କାନ୍ଦି ଛାତିରେ କପାଳରେ ହାତ ମାରି ମୂର୍ଚ୍ଛିତ ହୋଇ ପଡ଼ିଲେ । ଅନ୍ୟ ଦୁଇ ରାଣୀ ମଧ୍ୟ ବାହୁନି ବାହୁନି କାନ୍ଦିଲେ । ଦେଖୁଁ ଦେଖୁଁ ଅନ୍ତଃପୁରରେ, ନଗରରେ ଏ ଖବର ମାଡ଼ିଗଲା । ସମସ୍ତଙ୍କ ଆଖିରୁ ଧାର ଧାର ଲୁହ ଗଡ଼ିଗଲା । ସୀତାଙ୍କ ଭଉଣୀମାନଙ୍କ ଦୁଃଖ କହିଲେ ନ ସରେ । ଶେଷରେ ସ୍ତ୍ରୀମାନେ ଅନ୍ତଃପୁରରେ ଯାଇ ରୁଣ୍ଡ ହୋଇଗଲେ । ରାଜାଙ୍କ ନଅରଟି ଯେପରି ଦୁଃଖ ଶୋକରେ ଭାସିଗଲା । ପରେ ଦାସୀମାନେ ସୀତାଙ୍କ ଶାଶୁ ଓ ଭଉଣୀ-ମାନଙ୍କୁ ପ୍ରବୋଧ ଦେଲେ । ସମସ୍ତେ ମନର ଦୁଃଖ ମନରେ ମାରି ଏକ ପ୍ରକାର ଶାନ୍ତ ହେଲେ । ରାମ ଅସଲ ସୀତାଙ୍କୁ ଛାଡ଼ି ନକଲି ସୀତା ଦେଖି ଦିନ କଟାଇବାକୁ ଲାଗିଲେ ।



## ପିଲାଦିନର ଖେଳ କୌତୁକ

ଲବ କୁଶ ଅତି ସୁନ୍ଦର । ସୁନ୍ଦରପଣରେ କିଏ କା'ଠୁଁ ଊଣା ନୁହେଁ । ଦୁହିଁଙ୍କ ଦେହରୁ ଅପୂର୍ବ ଜ୍ୟୋତି ଫୁଟି ଉଠୁଥିଲା । ସେମାନଙ୍କ ରୂପର ଆଲୁଅରେ ମୁନିଙ୍କ ଆଶ୍ରମଟି ଉଜ୍ଜ୍ୱଳ ହୋଇ ଯାଉଥାଏ । ଶିଶୁ ଦିହଟି ଶୋଇଥିଲା ବେଳେ ଫୁଟନ୍ତା ଫୁଲ ପରି ବଡ଼ ଉଜ୍ଜ୍ୱଳ ଦିଶନ୍ତି । ମନେ ହୁଏ, ସତେ ଅବା ଗଙ୍ଗା ଜଳରେ ଉଜ୍ଜ୍ୱଳ ସୂର୍ଯ୍ୟ କିରଣରେ ଦିଓଟି ନୀଳ କଇଁ ଭାସି ଯାଉଛି । ସେମାନଙ୍କୁ ଯେ ଦେଖେ, ତା'ମନରେ ସନ୍ତୋଷ ଖେଳି ବୁଲି ଯାଏ । ଆହା କି ସୁନ୍ଦର ସତେ ପିଲା ଦିଓଟି ! ପୂର୍ଣ୍ଣଚନ୍ଦ୍ର

ପରି ମୁହଁ ଯୋଡ଼ିକ କି ସରଳ କି ସୁନ୍ଦର ! ଚିକ୍କଣ କୁଞ୍ଚିକୁଞ୍ଚିଆ ବାଳ, ଉଚ୍ଚ କପାଳ, ବଡ଼ ବଡ଼ ଆଖି, ନାଲି ଓଷ୍ଠ, କୋମଳ ଆଉ ଲମ୍ବା ଲମ୍ବା ହାତ, ଦର୍ପଣ ପରି ଅଙ୍ଗୁଳି-ନଖ ।

ଶୁକ୍ଲପକ୍ଷର ଚନ୍ଦ୍ର ପରି ଲବ କୁଶ କ୍ରମେ ବଢ଼ିବାକୁ ଲାଗିଲେ । ନାନା ରକମ ଖେଳ କୌତୁକରେ ମାତିଲେ । ସେମାନେ ତ ପିଲା— ପିଲା ଦିନର ଦୁଷ୍ଟାମି ଛାଡ଼ନ୍ତି କେତେବେଳେ ? ସୀତା ବାଲ୍ମୀକି ବା ମୁନିପତ୍ନୀମାନେ ପିଲା ଦିହିଁଙ୍କୁ ପାଖକୁ ଡାକିଲେ, ଦୁହେଁ କର କର ହସି ପାଖରୁ ଖସି ଯା'ନ୍ତି । ଗୋଡ଼େଇଲେ ଧାଇଁ ଗଛ ଉହାଡ଼ରେ ଲୁଚି ରହନ୍ତି । ଧରା ପଡ଼ିଲେ ହସି ହସି ଗୋଡ଼ ଭିଡ଼ି ଓହଳ ପଡ଼ନ୍ତି । କେବେ କେବେ ବାଲ୍ମୀକିଙ୍କର ଦାଢ଼ି ଟାଣି ହସନ୍ତି, ହସରେ ସମସ୍ତଙ୍କୁ ଗଡ଼ାଇ ଦିଅନ୍ତି । ଆଶ୍ରମରେ ହୋମ ଲାଗିଥିବାବେଳେ କେବେ କେବେ ହୋମ କୁଣ୍ଡରୁ ଦଉପୋଡ଼ା କାଠ ଓଟାରି ନେଇ ଫିଙ୍ଗନ୍ତି । କେବେ ଅବା ପୂଜା ଜିନିଷ ସବୁ ପାତ୍ରରୁ ଝାମ୍ପି ଖଣ୍ଡେ ଦୂରରେ ଯାଇ ହସି ହସି ହେଣ୍ଡି ମାରି ଖାଇ ପକାନ୍ତି ।

ଅସ୍ତେ ଅସ୍ତେ ପିଲା ଦୁହେଁ କଥା କହିବା ଶିଖିଲେ । କି ମଧୁର ସୁନ୍ଦର ସେ ଦରୋଟି କଥା ! ସୀତା ଦୁହିଁଙ୍କି କୋଳରେ ବସାଇ ଦେହର ପ୍ରତ୍ୟେକ ଅଙ୍ଗ ଦେଖାଇ ଦିଅନ୍ତି, ନାମ କହି ଦିଅନ୍ତି । ପଚାରିଲେ ସେମାନେ ନିଜ ନିଜ ଦେହର ଅଙ୍ଗ ସବୁ ନାମ ଧରି ଦେଖାନ୍ତି ।

ଦିନେ ସକାଳବେଳେ ଦୁଇ ଜଣ ଋଷିକୁମାରୀ ଲବ କୁଶଙ୍କୁ କାଖରେ ଧରି ନଈ କୂଳେ ବୁଲୁଥିଲେ । ଦୁହେଁ ଦି ପିଲାଙ୍କୁ ଗଛ ପତ୍ର, ଲଟା ବୁଦା, ପଶୁ ପକ୍ଷୀ, ନଈର ମାଛ ଦେଖାଉ ଥିଲେ । ସେତେବେଳେ ଲବ ଗୋଟିଏ ବାଘପିଲାକୁ ଦେଖିଲା । ବାଘ ଛୁଆଟି ନଈ କୂଳେ କୂଳେ

ଧାଇଁ ପଳାଇଗଲା । ତାହା ବାଘ ଛୁଆ ବୋଲି ଲବ ଜାଣେ ନାହିଁ ସତ, ମାତ୍ର ତାହାକୁ ପାଖକୁ ଆଣିବା ପାଇଁ ହଠ କରି ଉଠିଲା । କୁଶ ଭୂମି ରହିବାର ଦିନ ନୁହେ । ବାଘ ଛୁଆକୁ ଦେଖି ନାହିଁ— ମାତ୍ର ଲବର ହଠ ଦେଖି ସେ ବି ଅଳି କରି ବସିଲା । ମୁନିକୁମାରୀ ଦୁହେଁ ମହା ଅସୁବିଧାରେ ପଡ଼ିଲେ—ବାଘ ପିଲାଟି ତ ଅଦୃଶ୍ୟ ହୋଇ ଗଲାଣି, ତାକୁ ଆଣୁଛନ୍ତି କିପରି ? ଏଣେ ଶିଶୁ ହରିଣଙ୍କ ଅଳିର ଆଉ ସୀମା ନାହିଁ । ଦୁହେଁ କାନ୍ଦି କାନ୍ଦି କାଖରୁ ଖସି ପଡ଼ୁଥାନ୍ତି, ତଳେ ଗଡ଼ି ଯାଉଥାନ୍ତି । ପ୍ରବୋଧ ମାନିଲେ ନାହିଁ । ଋଷିକୁମାରୀମାନେ କଷ୍ଟେ ମଷ୍ଟେ ଦିହିଙ୍କୁ ଧରି ଆଶ୍ରମକୁ ବାହୁଡ଼ିଲେ । ସୀତା ଆଉ ମୁନିଙ୍କି ଦେଖି ଲବ କୁଶଙ୍କ କାନ୍ଦ ବଢ଼ିବାକୁ ଲାଗିଲା । ପିଲାଙ୍କ କାନ୍ଦରେ ସମସ୍ତେ ହସୁଥାନ୍ତି । ବାଲ୍ମୀକି ଶିଷ୍ୟମାନଙ୍କୁ ପଠାଇ ହରିଣ ବାଘପିଲା ଅଣାଇଲେ । ଲବ କୁଶଙ୍କ ଅଳି ହଠ କେଉଁ ଆଡ଼େ ଗୁଳିଗଲା । ଦୁହେଁ ହସି ହସି ବାଘ ପିଲା ହରିଣଙ୍କୁ କୁଣ୍ଢେଇ ଧରିଲେ, ସେମାନଙ୍କ ଉପରେ ବସିଲେ, ନାଚିଲେ ।

ଦେଖୁ ଦେଖୁ ଲବ କୁଶଙ୍କର ବୟସ ଦୁଇ ବର୍ଷ ହେଲା । ସେମାନେ ଅଧିକ ସ୍ପଷ୍ଟ କଥା କହିବାକୁ ଲାଗିଲେ । ବାଲ୍ମୀକି ସେମାନଙ୍କୁ ପଶୁ ପକ୍ଷୀ-ମାନଙ୍କର, ନାନା ଗଛ ଲତାର, ଆଉ ଆଉ ଜିନିଷର ନାମ ସବୁ ଶିଖାଇ ଦେଲେ । ଦୁହେଁ ଋଷିଙ୍କ ବୋଲ ମାନି ଚଳନ୍ତି— କେବେ କେବେ ଋଷି କିଛି ଦୂରକୁ ଯାଇ କେତେ ପଦାର୍ଥ ଆଣିବାକୁ କହନ୍ତି । ଲବ କୁଶ ଆନନ୍ଦରେ ଧାଇଁ ସେ ସବୁ ଆଣି ଦିଅନ୍ତି । ଅନେକ ସମୟରେ ବାଲ୍ମୀକି ହୋମ କୁଣ୍ଡ ପାଖକୁ ଲବ କୁଶଙ୍କୁ ସଙ୍ଗେ ଧରି ଯାନ୍ତି । ଋଷି ହୋମରେ ବସିଥିବା ସମୟରେ ପିଲା ଦୁହେଁ ଧୀର ସ୍ଥିର ହୋଇ ଏକ ଧ୍ୟାନରେ ହୋମ ଦେଖନ୍ତି । ସବୁ ବେଳେ ଋଷି, ସୀତା ମୁନିପତ୍ନୀ, ମୁନିକୁମାରୀ

ଅନ୍ୟ ଋଷିଙ୍କ ଶିଷ୍ୟମାନେ ଲବ କୁଶଙ୍କୁ ଘେରି ରହି ଦୁହିଁଙ୍କର ନାନା ପ୍ରକାର ଖେଳ କୌତୁକ ଦେଖନ୍ତି । ଏପରି ବର୍ଷେ ବିତିଗଲା ।

ଲବ କୁଶ ବୟସର ତୃତୀୟ ବର୍ଷରେ ପାଦ ଦେଲେ । ଶୁଭ ମୁହୂର୍ତ୍ତରେ ଉଚିତ ବିଧାନରେ ବାଲ୍ମୀକି ପିଲା ଦୁହିଁଙ୍କର କାନ ଫୋଡ଼ାଇ ଦେଲେ । ଏ ଆନନ୍ଦ ଉତ୍ସବ ଭିତରେ ସୀତାଙ୍କ ଆଖିରୁ ଦି ଟୋପା ଲୁହ ଗଡ଼ିଗଲା । ପିଲା ଯୋଡ଼ିକ ଅଯୋଧ୍ୟାରେ ଥିଲେ ଆଜି କାନଫୋଡ଼ା ଉତ୍ସବଟା ସତେ କି ରଙ୍ଗ ଢଙ୍ଗରେ ହୋଇ ନ ଥାନ୍ତା ! ଛାଡ଼ ସେ କଥା । ନଅରରେ ହେଉ, ବଣରେ ହେଉ ତିନି ବର୍ଷ ବୟସରେ କାନ ଫୋଡ଼ା ହେବାର କଥା—ହେଲା, ଯେପରି ହେଉ ବିଧାନ ଚଳିଗଲା !

ଲବ କୁଶ ତାଙ୍କ ସମାନ ବୟସର ଋଷି ପିଲାଙ୍କ ସଙ୍ଗେ ମିଳି ମିଶି ଖେଳନ୍ତି, ବୁଲନ୍ତି । ସମସ୍ତେ ବଣ ଭିତରେ ନଈ କୂଳେ, ଗଛ ମୂଳେ, ପାହାଡ଼ ତଳେ ନାନା ପ୍ରକାର ଖେଳ ଖେଳନ୍ତି । କେବେ ଲୁଚକାଳି, ଆଖିଧରା, ଡାଇଁଫୁଲ ଖେଳନ୍ତି, କେବେ ଅବା ମଲ୍ଲ ଯୁଦ୍ଧ କରନ୍ତି, ଧାଆଁନ୍ତି । ପିଲାମାନେ ଡେଇଁ ନାଚି ଖେଳିବା ବେଳେ ଗଛ ଲତା ଆନନ୍ଦରେ ସେମାନଙ୍କ ଉପରେ ପତ୍ର, ଫଳ, ଫୁଲ ଝାଡ଼ି ଦିଅନ୍ତି । ପକ୍ଷି-ମାନେ ମଧୁର ସୁନ୍ଦର ସ୍ୱରରେ ଗା'ନ୍ତି, ନଈ ପାଣି କଳ କଳ ନାଦରେ ନାଚି ଖେଳି ଚାଲେ । ଏମାନଙ୍କ ସାଥିରେ ବାଘ ପିଲା, ହରିଣ ଛୁଆ, ବାଛୁରି ଆଦି ଆଉ ଛୋଟ ଛୋଟ ପଶୁମାନେ ବି ଖେଳନ୍ତି ।

କେବେ କେବେ ପିଲାମାନେ ମିଛି ନକଲି ହୋମ କରନ୍ତି । ଥରେ ଲବ, ଥରେ କୁଶ ନିଜ ନିଜକୁ ବାଲ୍ମୀକି ସାଜି ହୋମରେ ବସନ୍ତି । ଗୀତ, ନାଟ, ହସ କଇତାଳି ବରାବର ଚାଲି ଥାଏ । ଲବ କୁଶ ମାଟିରେ ଦେବତା ମୂର୍ତ୍ତିମାନ ଗଢ଼ନ୍ତି । ମୂର୍ତ୍ତିମାନଙ୍କୁ ଫୁଲ ଚନ୍ଦନ ବେଲପତ୍ର,

ଦୁବ, ନାନା ପ୍ରକାର ଫଳ ଦେଇ ପୂଜା କରନ୍ତି, ଜୁହାର କରନ୍ତି । ମାଟିର ମୂର୍ତ୍ତି ତ ହଲଚଲ ହୁଏ ନାହିଁ କି ଖାଏ ନାହିଁ—ତେଣୁ ଏଥିପାଇଁ ପିଲାମାନେ ପୂଜାର ଫଳ ସବୁ ପାଟିରେ ପକାଇ ନାଚନ୍ତି । ଖେଳ ସରିଲେ ପ୍ରତିମା ସବୁ ଭାଙ୍ଗି ଚୁଙ୍ଗ ଫୋପାଡ଼ି ଦିଅନ୍ତି । କେବେ କେବେ ପିଲାମାନେ ନଈରେ ଯାଇ ଠିଆ ହୁଅନ୍ତି, ପାଣିରେ ନିଜ ନିଜର ପ୍ରତିବିମ୍ବ ଦେଖି ଆନନ୍ଦରେ ପାଗଳ ହୋଇ ଉଠନ୍ତି । ନିଜ ପ୍ରତିବିମ୍ବକୁ ଦେଖି ଖତେଇ ହୁଅନ୍ତି— ପ୍ରତିବିମ୍ବ ତ ତୁନି ରହିବା ଜିନିଷ ନୁହେଁ । ସେ ବି ଖତେଇ ହୁଏ । ଏମାନେ ଯାହା କରନ୍ତି, ପ୍ରତିବିମ୍ବ ଠିକ୍ ସେଇଆ କରେ । ଏଥିରେ ପିଲାମାନେ ହସି ହସି ଅଥୟ ହୋଇ ପଡ଼ନ୍ତି । ସେଇ ସରଳ ସରସ ହସରେ ନଈ ବି ହସି ଉଠେ । ପିଲାମାନେ କେବେ କେବେ ଛୋଟ ଛୋଟ ଗଛ ଚଢ଼ି ଫଳ ଖାଆନ୍ତି, ଲଟାରୁ ଫୁଲ ତୋଳି ଦେହଯାକ ମଣ୍ଡିଥାନ୍ତି । ଲବ କୁଶଙ୍କର ଏପରି ନାନା ପ୍ରକାର ଖେଳ କୌତୁକ ଦେଖି ସୀତା ଦୁଃଖ ଶୋକ ଭୁଲି ଯାନ୍ତି ।



## ବିଦ୍ୟାଶିକ୍ଷା

ପାଞ୍ଚ ବର୍ଷ ବୟସରେ ଲବ କୁଶଙ୍କର ବିଦ୍ୟାରମ୍ଭ ହେଲା । ବାଲ୍ମୀକି ମୁନି ସେମାନଙ୍କର ଗୁରୁ । ପ୍ରଥମରେ ସରସ୍ୱତୀପୂଜା । ବାଲ୍ମୀକିଙ୍କ ଆଦେଶରେ ପିଲାମାନେ ଗୋଟିଏ ସରସ୍ୱତୀ ପ୍ରତିମା ଗଢ଼ିଲେ । ପ୍ରତିମାକୁ ନାନା ଫୁଲ, ବେଲ ପତ୍ରରେ ମଣ୍ଡି ଦେଲେ । ପୂଜା ସରିଲାରୁ ମୁନି ଦୁହିଁଙ୍କୁ ଅକ୍ଷର ଶିଖାଇ ଦେଲେ । ସେମାନେ ବର୍ଣ୍ଣ ମାଳା ଅଳ୍ପ ସମୟରେ ଶିଖି ପକାଇଲେ,

ଛୋଟ ଛୋଟ ବାକ୍ୟ ସବୁ ବନାନ କରିବାକୁ ଆରମ୍ଭ କଲେ । କ୍ରମେ ପୋଥି ପଢ଼ିବାକୁ ସମର୍ଥ ହେଲେ ।

ପିଲାଯୋଡ଼ିକର ଖେଳ କୌତୁକରେ ଯେପରି ଶ୍ରଦ୍ଧା, ପାଠପଢ଼ାରେ ତାଠାରୁ ଅଧିକ ଆଗ୍ରହ, ଯତ୍ନ । ପ୍ରତି ଦିନ ଗେରୁଆ ଗାମୁଛା ପିନ୍ଧି ତାଳପତ୍ର, ଲେଖନ ଧରି ମହା ଆନନ୍ଦରେ ଋଷିଙ୍କ ପାଖକୁ ଧାଇଁ ଯାନ୍ତି, ଆଉ ମୁନିପିଲାଙ୍କ ସାଥିରେ ମନ ଲଗାଇ ପଢ଼ନ୍ତି । ବାଲ୍ମୀକି ପୂର୍ବ ଦିନର ପାଠରେ ପ୍ରଶ୍ନ କରନ୍ତି । ଲବ କୁଶ ସଙ୍ଗେ ଘୋଷି ପଢ଼ିଥିବା ପାଠ ଭଲ କରି କହି ପକାନ୍ତି । ଯାହା ଶୁଣନ୍ତି ତାହା ସୁନ୍ଦର ମନେ ରଖି ଦିଅନ୍ତି । ଏହା ଦେଖି ଋଷିଙ୍କ ମନରେ ସନ୍ତୋଷ ଧରୁ ନ ଥାଏ । ଭାବନ୍ତି, ଯୋଗ୍ୟ ବାପାର ଯୋଗ୍ୟ ପିଲା । ଦୁହିଁଙ୍କ ମୁହଁରୁ ଜ୍ଞାନ ଯେପରି ଫୁଟି ବାହାରୁଥାଏ ।

ଋଷି ପିଲାଙ୍କ ଭିତରେ କେହି ପାଠ ଚୋର ହୋଇ ଠିକ୍ ସମୟରେ ପଢ଼ିବାକୁ ନ ଗଲେ, ତାକୁ ଟାଣି ଆଣିବା ପାଇଁ ବାଲ୍ମୀକି ଲବ କୁଶଙ୍କୁ ପଠାନ୍ତି । ଦୁହେଁ ଧାଇଁ ଯାଇ ପାଠ ଚୋରକୁ ଉଠାଇ, ବୋହି ଆଣନ୍ତି । ପୁଲିସ ଚୋରକୁ ମେଜିଷ୍ଟ୍ରେଟଙ୍କ ଆଗରେ ଆଣି ଠିଆ କରାଇବା ପରି, ଦୁହେଁ ପାଠଚୋରମାନଙ୍କୁ ଝିଙ୍କି ଆଣି ଗୁରୁଙ୍କ ଆଗରେ ଠିଆ କରାଇ ଦିଅନ୍ତି । ପ୍ରତି ଦିନ ପାଠପଢ଼ା ଶେଷରେ ମୁନି ପିଲାଙ୍କୁ ଖାଇବାକୁ ନାନା ରକମର ଫଳ ଦିଅନ୍ତି । ପାଠଶାଳାକୁ ଯେ ଆଗେ ଆସେ ତାଙ୍କୁ ଆଗେ ଖାଇବାକୁ ଦେଇ ଛାଡ଼ନ୍ତି । ପାଠ ଚୋରମାନଙ୍କୁ ଘଡ଼ିଏ ଦି ଘଡ଼ି ପାଠଶାଳାର ଗୋଟିଏ କୋଣରେ ଠିଆ କରାଇ ଦିଅନ୍ତି ।

ଲବ କୁଶ ବଡ଼ ଭଲ ପିଲା । ପାଠ ପଢ଼ାଇବାବେଳେ ଦୁହେଁ ମୁନିଙ୍କ ଶୁଣ୍ଡିକୁ ଚାହିଁ ରହିଥାନ୍ତି । ଯାହା ଶୁଣନ୍ତି ସେଇକ୍ଷଣି ଘୋଷି ପକାନ୍ତି । ସେମାନଙ୍କ ସ୍ପଷ୍ଟ ଉଚ୍ଚାରଣରେ ଋଷିଙ୍କର ଭାରି ଆନନ୍ଦ ।

ଯାହା କହନ୍ତି ସେଥିରେ ଟିକିଏ ହେଲେ ଭୁଲ ନ ଥାଏ । ବାଲ୍ମୀକି ପିଲା-ମାନଙ୍କୁ ଆଗେ ଆଗେ ଛୋଟ ସ୍ତୁବ ସ୍ତୁତି ବୋଲିବାର ବତେଇଦେଲେ । ଲବକୁଶ କଅଁଳ ସ୍ୱରରେ ସ୍ତୁବ ସ୍ତୋତ୍ର ବେଶ୍ ଗାଇ ଯା'ନ୍ତି ।

ଦେଖୁଁ ଦେଖୁଁ ଦି ଭାଇ ପୋଥିପଢ଼ା କ୍ରମରୂପେ ଶିଖି ପକାଇଲେ । ଅତି ଚଞ୍ଚଳ ପୁସ୍ତକ ପଢ଼ି ପାରୁଥିଲେ । ଆଉ ଅଉ ଛୋଟ ପିଲାଙ୍କୁ କେବେ କେବେ ପଢ଼ାଇବାକୁ ମୁନି ଦି ଭାଇଙ୍କି କହନ୍ତି । ଦୁହେଁ କେଡ଼େ ସୁନ୍ଦର ପଢ଼ାଇ ଦିଅନ୍ତି ! ବର୍ଷେ ଦି ବର୍ଷ ଭିତରେ ଲବକୁଶ ବ୍ୟାକରଣ, ଗଣିତ, ଜ୍ୟୋତିଷ ଶାସ୍ତ୍ର, ଭିନ୍ନ ଭିନ୍ନ ଭାଷା ଆୟତ୍ତ କରି ପକାଇଲେ । ନାଟ, ଗୀତ, ଚିତ୍ରଲେଖା, ବାଜା ବଜାଇବାରେ ପାରଙ୍ଗମ ହୋଇ ଉଠିଲେ । ଏତେ ଅଳ୍ପ ବୟସରେ ଏତେ ଗୁଡ଼ାଏ କଥା ଶିଖିବା କଣ ସହଜ କଥା ? ଆଶ୍ରମର ସମସ୍ତେ ବୁଦ୍ଧିମାନ ଚତୁର ପିଲାଦିଓଟିଙ୍କୁ ଧନ୍ୟ ଧନ୍ୟ କଲେ । ରାମଚନ୍ଦ୍ରଙ୍କର ପୁଅ, ସୂର୍ଯ୍ୟ ବଂଶର ପିଲା, ବାଲ୍ମୀକି ମୁନିଙ୍କର ଶିଷ୍ୟ — ଏଥିରେ ସେମାନଙ୍କର ବୁଦ୍ଧି, ଜ୍ଞାନ କାହିଁକି ବା ନ ହେବ ?

ପ୍ରତି ଦି ଦିନକେ ଥରେ ବାଲ୍ମୀକି ସମସ୍ତଙ୍କ ଆଗରେ ପିଲାମାନଙ୍କୁ ପରୀକ୍ଷା କରନ୍ତି । ପରୀକ୍ଷାରେ ଲବ କୁଶ ସମସ୍ତଙ୍କୁ ବଳି ଯାନ୍ତି । ସମସ୍ତେ ଏକାବେଳକେ ଅଚମ୍ଭିତ ! ନିତି ସଞ୍ଜବେଳେ ଦି ଭାଇ ପାଠଶାଳାରୁ ଫେରି ମା ପାଖରେ ବସନ୍ତି । ସୀତା ଦୁହିଁଙ୍କ କୋଳରେ ବସାଇ ମୁଣ୍ଡ ପିଠି ଆଉଁସି ପାଠ ପରୀକ୍ଷା କରନ୍ତି । ସେମାନଙ୍କ ତୁଣ୍ଡରୁ ପାଠ ପଢ଼ା, ଗୀତ ବୋଲା ଶୁଣି ମା ବଡ଼ ଖୁସୀ ହୋଇ ଉଠନ୍ତି । କେବେ କେବେ ସୀତା ପଚାରନ୍ତି —'ବାପମାନେ, ଆଜ ପଢ଼ା ସାରି ଆସିବାରେ ଏତେ ଡେରି କଲ କାହିଁ । ଭୋକ ହେଉ ନାହିଁ ?'

ପିଲାମାନେ କହନ୍ତି—'ମା, ପଢ଼ିବାବେଳେ ଆମକୁ ଭୋକ ଶୋଷ ଲାଗେ ନାହିଁ । ଗୁରୁଙ୍କ ପାଖରେ ବସିଥିବାବେଳେ ଖାଇବା ପିଇବା ଏକାବେଳକେ ଭୁଲି ଯାଉଁ ।'

ତୁମେମାନେ ଜାଣ, ଲବକୁଶ କ୍ଷତ୍ରିୟ ବାଳକ । ଯୁଦ୍ଧ କ୍ଷତ୍ରିୟର ପ୍ରଧାନ କାର୍ଯ୍ୟ । ସବୁ ଶାସ୍ତ୍ର ପଢ଼ାଇବା ପରେ ବାଲ୍ମୀକି ଦୁହିଁଙ୍କି ଯୁଦ୍ଧ ବିଦ୍ୟା ଶିଖାଇବାକୁ ଆରମ୍ଭ କଲେ । ଶସ୍ତ୍ରଅସ୍ତ୍ର କିପରି ବ୍ୟବହାର କରିବାକୁ ହେବ, କିପରି ବା ଲଢ଼ିବା ଦରକାର, ସେ ସବୁ ବିଷୟ ସେମାନଙ୍କୁ ଶିଖାଇ ଦେଲେ । ପିଲାମାନଙ୍କ ମଧ୍ୟରେ ପ୍ରତିଦିନ ନକଲି ଯୁଦ୍ଧ ହୁଏ । ପିଲା-ମାନେ ଦୁ'ଭାଗରେ ଦୁ'ଆଡ଼େ ଛିଡ଼ା ହୋଇ ଯାନ୍ତି । ଲବ ଗୋଟିଏ ଦଳ ଆଗରେ, କୁଶ ଅପର ଦଳ ଆଗରେ ଠିଆ ହୋଇ ଯୁଝନ୍ତି । ଗୋଟିଏ ଦଳ ଆର ଦଳକୁ ଖେଦି ଯା'ନ୍ତି । ନକଲି ଲଢ଼େଇ କରିବା ବେଳେ ସୀତା, ବାଲ୍ମୀକି, ଋଷିପତ୍ନୀ, ଋଷିକୁମାରୀ ଓ ମୁନିଶିଷ୍ୟମାନେ ତାହା ଆଗ୍ରହରେ ଦେଖୁଥାନ୍ତି । ଥରେ ଗୋଟିଏ ପକ୍ଷ ଜିଣିଲେ, ଥରେ ଅନ୍ୟ ପକ୍ଷ ଜିଣନ୍ତି । ଜିତିବା ଦଳରେ ଘନ ଘନ କରତାଳି ହେଉଥାଏ । ଲଢ଼େଇରେ ଲବ-କୁଶଙ୍କର ଭାରି ଆଗ୍ରହ ଉତ୍ସାହ, ଭାରି ସାହସ । ଦୁହିଁଙ୍କର ଜ୍ଞାନ, ବୁଦ୍ଧି ଆଉ ସୌନ୍ଦର୍ଯ୍ୟ ବଢ଼ିବା ସଙ୍ଗେ ଦେହର ବଳ, ସାହସ ବି ବଢ଼ି ଉଠୁଥାଏ ।

କେବେ କେବେ ପିଲାମାନଙ୍କର ନକଲି ରାଜସଭା ବା ଦରବାର ବସେ । ଲବ ରାଜା ସାଜି ବସିଲେ, କୁଶ ମନ୍ତ୍ରୀ ହୁଅନ୍ତି । କୁଶ ରାଜ-ଗାଦିରେ ବସିଲେ ଲବ ମନ୍ତ୍ରୀ କାମ କରନ୍ତି । ରାଜା ମୁଣ୍ଡ ଉପରେ କେତେ ଋଷି ପିଲା ତାଳପତ୍ର ଛତା ଧରି ଠିଆ ହୁଅନ୍ତି । କେତେ ଜଣ ପତ୍ରର ଆଲଟ ପକା'ନ୍ତି । ପରେ ରାଜାଙ୍କର ବିଚାରଣା ଚାଲେ । ଜଣେ ଦି ଜଣଙ୍କୁ ଦୋଷୀ କରି ରାଜାଙ୍କ ସମ୍ମୁଖକୁ ଓଟାରି ଆଣି ଛିଡ଼ା କରନ୍ତି । କେତେ ପିଲା ସାକ୍ଷୀ



'ସୀତା ଦୁହିଁଙ୍କି ପରୀକ୍ଷା କରନ୍ତ'………(ଲବ କୁଶ ପୃଷ୍ଠା ୧୭)

ହୋଇ ବାହାରନ୍ତି । ସାକ୍ଷ୍ୟ ଶୁଣିବା ପରେ ଲବକୁଶ ଦୋଷୀଙ୍କୁ ଉଚିତ ଦଣ୍ଡ ଦିଅନ୍ତି । ଏପରି ବିଚାରର ମଜାର ମଜଲିସ୍ ଚାଲିଥାଏ ।

ଦେଖୁଁ ଦେଖୁଁ ଉପନୟନ ହେବାର ବୟସ ଆସି ପହଞ୍ଚିଗଲା । ବାର ବର୍ଷ ବୟସରେ ବାଲ୍ମୀକି ହୋମ କରି ମନ୍ତ୍ର ବୋଲି ଲବ ଓ କୁଶଙ୍କ କାନ୍ଧରେ ପଇତା ପକାଇ ଦେଲେ । ସେମାନଙ୍କୁ ସନ୍ଧ୍ୟା ଗାୟତ୍ରୀ ଶିଖାଇଲେ । ନିତି ସକାଳେ, ମଧ୍ୟାହ୍ନରେ ଆଉ ସଞ୍ଜବେଳେ ଦୁ'ଭାଇ ସନ୍ଧ୍ୟା କରନ୍ତି, ଗାୟତ୍ରୀ ଜପନ୍ତି । ଏଥିରେ ଦୁହିଁଙ୍କର ଭାରି ନିଷ୍ଠା । ବ୍ରତୋପନୟନ ହେଲାକ୍ଷଣି ବ୍ରାହ୍ମଣ, କ୍ଷତ୍ରିୟ ବାଳକମାନେ ବ୍ରହ୍ମଚାରୀ ହୋଇ ଥାଆନ୍ତି । ଏଥିରେ ନୂତନ ଜୀବନ ଆରମ୍ଭ ହୁଏ । ଲବ କୁଶ ମୁଣି ଧରି ଆଶ୍ରମରେ ଭିକ୍ଷା ମାଗି ବୁଲନ୍ତି । ପ୍ରଥମରେ ମା'ଙ୍କ ପାଖକୁ ଯା'ନ୍ତି, ସୀତା ଭିକ୍ଷା ଦେବା ପରେ, ସେମାନେ ଅନ୍ୟମାନଙ୍କ ପାଖରେ ଯାଇ ଭିକ୍ଷା ପ୍ରାର୍ଥନା କରନ୍ତି ।

ଉପନୟନ ଉତ୍ତାରୁ ଲବ କୁଶ ମନ ଲଗାଇ ବେଦ ବେଦାଙ୍ଗ ପାଠ କରିବାକୁ ଲାଗିଲେ । ଅଳ୍ପ ଦିନ ମଧ୍ୟରେ ଧର୍ମ ଶାସ୍ତ୍ରରେ ଦୁହିଁଙ୍କର ଅଗାଧ ଜ୍ଞାନ ଜନ୍ମିଲା । ସେମାନଙ୍କ ବେଦପାଠରେ ସମସ୍ତେ ଆଶ୍ଚର୍ଯ୍ୟ ହୋଇଯାନ୍ତି । ବାଲ୍ମୀକିଙ୍କ ସହିତ ଦି ଭାଇଙ୍କର ବେଶ୍ ଧର୍ମଶାସ୍ତ୍ର ଆଲୋଚନା, ତର୍କ ବିତର୍କ ହୁଏ । ଭଗବାନଙ୍କ ବିଷୟରେ ନାନା ଯୁକ୍ତି ଚାଲେ । ଏ ବିଷୟରେ ବାଲ୍ମୀକିଙ୍କୁ ବହୁ ପ୍ରଶ୍ନ ପଚାରି ଉଚିତ ଉତ୍ତର ପା'ନ୍ତି । କୌଣସି କଥାରେ ସନ୍ଦେହ ହେଲାକ୍ଷଣି ସେମାନେ ବାଲ୍ମୀକିଙ୍କି ନ ପଚାରି ନ ବୁଝି ନିଶ୍ଚିନ୍ତ ବସନ୍ତି ନାହିଁ । ସନ୍ଦେହ ଘୁଞ୍ଚିଲେ ଆଶ୍ୱସ୍ତ ହୋଇ ଉଠନ୍ତି । ବେଦ ପାଠ, ଧର୍ମ-ଶାସ୍ତ୍ର ଆଲୋଚନାରେ ଲବକୁଶଙ୍କର ମନୋଯୋଗ, ତୀକ୍ଷ୍ଣ ବୁଦ୍ଧି, ବିଚାର ବଳ ଦେଖି ସମସ୍ତେ ପ୍ରଶଂସା ନ କରି ରହି ପାରନ୍ତି ନାହିଁ । ତୁଳସୀ ଓ

ପଡ଼ୁରୁ ବାପେ । ବାଲ୍ମୀକ ଯେବେ ଯେଉଁ ବାଟ ଦେଖା'ନ୍ତି, ଦ'ଭାଇ ଚଞ୍ଚଳ ତାହା ଧର ଚାଲନ୍ତି । ଏହା ବୁଦ୍ଧିମାନ ଲୋକର କାର୍ଯ୍ୟ ଥିଲା ।

ବାଲ୍ମୀକ ଲବକୁଶଙ୍କୁ ଧନୁଶରର ବ୍ୟବହାର ଶିଖାଇଲେ । ଦେଖୁଁ ଦେଖୁଁ ଦ ଭାଇ ଲାଖବାବାରେ ଧୁରନ୍ଧର ହୋଇ ଉଠିଲେ । ଅନେକ ସମୟରେ ଶରବନ୍ଧା ପରୀକ୍ଷା ହୁଏ । ବେଶି ଦୂରରୁ ବାଣ ମାର ସେମାନେ ଗଛ ଗଣ୍ଡି ଫଟାଇ ଦଅନ୍ତି, ଉପରେ ଉଡ଼ ଯିବା ପକ୍ଷିମାନଙ୍କୁ ଶର ମାର ତଳେ ପକାଇଦଅନ୍ତି । ଗଛର ଫୁଲ, ଫଳ, ପତ୍ରକୁ, ନଦୀର ଛୋଟ ଛୋଟ ମାଛକୁ ଠିକ୍ ଲକ୍ଷ କର ଶର ଛାଡ଼ନ୍ତି । କ୍ରମେ ସେମାନେ ଶିକାର ଶିକ୍ଷା କଲେ । ବନରେ ବୁଲି ବାଘ ଇତ୍ୟାଦ ହିଂସ୍ର ଜନ୍ତୁଙ୍କୁ ଗୋଡ଼େଇ ଅଭ୍ୟାସ ଶିକାର କରବାକୁ ଲାଗିଲେ । ଶିକାର କରବା ସମୟରେ ଲବ କୁଶଙ୍କ ହାତରୁ ବନ୍ୟ ପଶୁମାନେ ନିସ୍ତାର ପାଉ ନ ଥିଲେ । ପରେ ସେମାନଙ୍କୁ ଖଣ୍ଡା, ଢାଲ, ଲାଠି, ବର୍ଚ୍ଛାର ବ୍ୟବହାର ଶିକ୍ଷା ଦଅଗଲା । ପିଲାମାନଙ୍କ ଅନ୍ୟାନ୍ୟ ଶାସ୍ତ୍ର ଜ୍ଞାନରେ ସୀତାଙ୍କର ଯେଉଁ ଆନନ୍ଦ ହେଉ ଥିଲା, ଦୁହିଙ୍କ ଯୁଦ୍ଧ—ବଦ୍ୟାରେ ତାଙ୍କ ଆନନ୍ଦ, ସନ୍ତୋଷ ଦୁଇ ଗୁଣ ବଢ଼ିଲା ।



## ରାମାୟଣଗାନ

ପ୍ରତିଦନ ବଡ଼ ସକାଳେ ଲବ କୁଶ ବାଲ୍ମୀକଙ୍କ ସାଥିରେ ନଈକି ଯାଆନ୍ତି । ସ୍ନାନ ସାର ଗଙ୍ଗା କୂଳେ ବସି ସନ୍ଧ୍ୟା କରନ୍ତି । ପରେ ଋଷିଙ୍କର ହୋମ ପାଇଁ ନଈବାଲି ଧର ଫେରନ୍ତି । ଆଶ୍ରମକୁ ଯିବା ବାଟରେ ଦଭାଇ ମୁନଙ୍କ ହୋମ ଆଉ ପୂଜା ପାଇଁ କାଠ ସଂଗ୍ରହ କରନ୍ତି, ଫୁଲ, ବେଲପତ୍ର, ଫଳ ଇତ୍ୟାଦ ତୋଳନ୍ତି । ବାଲ୍ମୀକ ହୋମ ପୂଜାଦ ସାର ଦ ପିଲାଙ୍କୁ ରାମାୟଣ ଗାନ ଶିଖାନ୍ତି ।

ରାମାୟଣ କଣ ତୁମେମାନେ ବୋଧହୁଏ ଜାଣିଛ । ସୀତା ତାଙ୍କ ଆଶ୍ରମରେ ଥିବାବେଳେ ବାଲ୍ମୀକିମୁନି ସଂସ୍କୃତ ଭାଷାରେ ରାମଙ୍କ ଚରିତ ଲେଖିଥିଲେ । ରାମାୟଣ ଆମ ଦେଶର ପ୍ରଥମ ପୁରାଣ । ତାହା ବଡ଼ ସୁନ୍ଦର ସରସ ସରଳ ମଧୁର ଭାଷାରେ ଲେଖା ହୋଇ ଅଛି । ସେଥିରେ ରାମ ରାବଣ ଚରିତ ବର୍ଣ୍ଣନା କରି ଯାଇଛି । ସେତେବେଳେ ବାଲ୍ମୀକି ରାମ-ଜନ୍ମଠାରୁ ସୀତାବନବାସ ଯାଏ ସବୁ କଥା ଲେଖି ସାରିଥିଲେ ! ପରେ ରାମାୟଣର ବଳକା ଭାଗ ରଚନା କଲେ । ସେ ପୁରାଣଟି ଗୋଟିଏ ବଡ଼ ତାଳପତ୍ର ପୋଥିରେ ଲେଖି ରଖିଥାନ୍ତି । ନିତି ସେ ରାମାୟଣଗାନ ଲବ କୁଶଙ୍କୁ ଶିଖାନ୍ତି, ରାମାୟଣ ଚରିତ ସ୍ପଷ୍ଟ କରି ବୁଝାଇ ଦିଅନ୍ତି । ଲବ କୁଶ ବୀଣା ଧରି ମୁନିଙ୍କ ପାଖରେ ରାମାୟଣ ଗାନ୍ତି । ସେମାନେ ଯେତେବେଳେ ମଧୁର କୋମଳ କଣ୍ଠରେ ଏକ ସ୍ୱରରେ ରାମାୟଣ ବୋଲନ୍ତି, ଆଶ୍ରମରେ ସମସ୍ତଙ୍କ ମନ ଆନନ୍ଦରେ ଢଳଢଳ ହୋଇଯାଏ, ହୃଦୟ ତରଳ ପଡ଼େ । ଅହା କି ସୁନ୍ଦର, ଚମତ୍କାର ସେଇ ଗାନ ! ସୁନ୍ଦର ଶିଶୁଙ୍କର ସୁନ୍ଦର ସ୍ୱରରେ ପୁରାଣ ବଡ଼ ସୁନ୍ଦର ଶୁଭେ— ଆଶ୍ରମ ଅଧିକ ପବିତ୍ର ହୋଇ ଉଠେ । ଦେଖୁଁ ଦେଖୁଁ ଦି ଭାଇ ରାମାୟଣର ପ୍ରତ୍ୟେକ ଭାଗ ବେଶ୍ ଗାଇ ଜାଣିଲେ, ପ୍ରତ୍ୟେକ ଶ୍ଳୋକର ଅର୍ଥ ସୁନ୍ଦର ବୁଝି ପାରିଲେ । ପୁରାଣ ବୋଲା ହେବା ସମୟରେ ମୁନି, ସୀତା, ମୁନିପତ୍ନୀ, ମୁନିକୁମାରୀ ଓ ଋଷିଶିଷ୍ୟମାନେ ଦି'ଭାଇଙ୍କି ଘେରି ବସି ଏକ ମନରେ ଶୁଣନ୍ତି । ଅନେକ ସମୟରେ, ବାଲ୍ମୀକି ଆଉ ସୀତାଙ୍କ ପାଖରେ ବସି ରାମାୟଣ ଗା'ନ୍ତି । ସେଇ ଗାନ ଶୁଣି ସୀତାଙ୍କ ପ୍ରାଣରେ ସାନ୍ତ୍ୱନା ଆସେ । ଗାନ ଚାଲି ଥିବା-ବେଳେ ସୀତାଙ୍କ ମୁଖରେ କେବେ କେବେ ହସ ଫୁଟି ଉଠେ, ତାଙ୍କ ମୁହଁ କେବେ କେବେ ମଉଳି ପଡ଼େ, ଆଖିରୁ ଝର ଝର ଲୁହ ବହି ପଡ଼େ । ବାଲ୍ମୀକି ଏହା ଦେଖି ଦରହାସ କରୁଥାନ୍ତି । ପିଲା ଦୁହେଁ କିଛି ବୁଝି ନ ପାରି ଋଷି ଆଉ ସୀତାଙ୍କ ମୁହଁକୁ ବକବକ ଚାହିଁ ରହନ୍ତି । ମା'

ଏକା ରାମାୟଣର ସୀତା ବୋଲି ଲବକୁଶ ଜାଣନ୍ତି ନାହିଁ—ରାମଚନ୍ଦ୍ର ହିଁ ସେମାନଙ୍କ ବାପା ବୋଲି ସେମାନେ ମୋଟେ ଜାଣନ୍ତି ନାହିଁ । ଏ କଥା ଦୁହିଁଙ୍କ ନିକଟରେ ଗୋପନ ରଖା ଯାଇଥାଏ । ଦିନେ ଲବ ସୀତାଙ୍କୁ ପଚାରିଲେ—'ମା, ଅମେ ରାମ ଯଶ ବୋଲିବାବେଳେ ତୁମେ କେବେ କେବେ କାନ୍ଦ କାହିଁକି ?' ସୀତା ତୁନି ହୋଇ ରହିଲେ । ପରେ କିନ୍ତୁ ଜଣାନ୍ତି ବାଧ ହୋଇ କହିଲେ—'ରାମଚନ୍ଦ୍ରଙ୍କର ଦୁଃଖ କଥା ଶୁଣି ଆଖିରୁ ଲୁହ ଖସି ପଡ଼େ । ଆହା, ସୀତାଙ୍କୁ ଛାଡ଼ିଦେଇ ରାମଙ୍କର କି ଦୁଃଖ ହେଉ ନ ଥିବ !' ଏଣୁ ତେଣୁ କହି ସୀତା ପିଲାଙ୍କୁ ତୃପ୍ତ କରି ଦିଅନ୍ତି ।

ରାମଚରିତକୁ ନେଇ କେବେ କେବେ ମୁନିଙ୍କ ସହିତ ଲବକୁଶ ନାନା ଯୁକ୍ତି ତର୍କ ବି କରନ୍ତି । ରାମାୟଣରେ ଯେଉଁମାନଙ୍କର କଥା ଲେଖା ଅଛି, ସେମାନଙ୍କର ଦୋଷ ଗୁଣ ବିଚାର କରି ବସନ୍ତି । ବାଲ୍ମୀକି, ସୀତା ସେଥିରେ ଅବାକ୍ ହୋଇ ଯା'ନ୍ତି—ପିଲାଙ୍କର ବୁଦ୍ଧି, ଚତୁରତାକୁ ମନେ ମନେ ତେର ପ୍ରଶଂସା କରନ୍ତି । ଦିନେ ଲବକୁଶ ବାଲ୍ମୀକି ଆଉ ସୀତାଙ୍କ ଆଗରେ ବସିଛନ୍ତି, ସେ ସମୟରେ ଲବ କହିଲେ—'ରାମଚନ୍ଦ୍ରଙ୍କର ମୁଁ ଦିଓଟି ବଡ଼ ଦୋଷ ଦେଖୁଛି ।'

ବାଲ୍ମୀକି:—କି କି ଦୋଷ ଦେଖୁଛ ?

ଲବ:—ରାମ ଲକ୍ଷ୍ମଣଙ୍କ ହାତରେ ସୂର୍ପଣଖାର ନାକ କାନ କଟାଇ ଦେଲେ । ଏ ପ୍ରଥମ ଦୋଷ । ନିର୍ଦ୍ଦୋଷ ଗର୍ଭବତୀ ସୀତାଙ୍କୁ ବନକୁ ପଠାଇ ଦେଲେ । ଏ ହେଉଛି ଦ୍ୱିତୀୟ ଦୋଷ ।

କୁଶ:—ସୂର୍ପଣଖା ଅପରିଚିତ ରାମ ଲକ୍ଷ୍ମଣଙ୍କୁ ଦେଖିବାକ୍ଷଣି ତାଙ୍କୁ ବିବାହ କରିବା ପାଇଁ ହଠ ବସିଲା । ତାର କଣ ଦୋଷ ହେଲା ନାହିଁ ?

ଲବ:—ଦୋଷ କପରି ହେଲା ? ଖାଲି ମନା କରିଥିଲେ କଣ କଥାଟା ସୁରୁଖୁରୁରେ ଚଳି ନ ଥାନ୍ତା ? ନାକ କାନ କଟା ହେଲା କିଆଁ ?

କୁଶ:— ମନା କରୁ କରୁ ତୁହାକୁ ତୁହା ହଇରାଣ କଲେ କିଏ ବା ନ ରାଗି ରହି ପାରିବ ?

ଲବ:—ଘଟିବାରୁହିଁ ଏତେ କାଣ୍ଡ କାରଖାନା, ଅଶାନ୍ତ ଗୋଳମାଳ, ଲୋକକ୍ଷୟ ରକ୍ତପାତ ହେଲା ।

ବାଲ୍ମୀକି ଟିକିଏ ହସି ଦେଇ କହିଲେ—'ଦୁଷ୍ଟ ଲୋକଙ୍କୁ ଏଭଳିହିଁ ଦଣ୍ଡ ଦିଆ ଯାଇଥାଏ । ଦୁଷ୍ଟ ଦମନ ରାମଙ୍କର କାର୍ଯ୍ୟ । କୌଣସି ଗୋଟାଏ କାରଣକୁ ନେଇ ସେ ଦୁଷ୍ଟ ରାକ୍ଷସ ବଂଶ ଲୋପ କରୁଛନ୍ତି ।'

ସୀତା ପଚାରିଲେ—'ରାମଙ୍କର ଆଉ ଦୋଷଟା କଣ ?'

ଲବ:—ନିର୍ଦ୍ଦୋଷ ସୀତାଙ୍କର ବନବାସ ।

ସୀତା:—ରାମଙ୍କର କିଛି ଦୋଷ ନାହିଁ । ପ୍ରଜାମାନେ ସୀତା ଚରିତ୍ରରେ ସନ୍ଦେହ କରିବାରୁ ସେ ଏହା କରିଛନ୍ତି ସିନା ! ଅପଖ୍ୟାତି ଦୁର୍ନାମ କମିଛି ?

କୁଶ:— ଲୋକେ ସନ୍ଦେହ କଲେ କଣ ହେଲା—ରାମ ନିଜେ ତ ସନ୍ଦେହ କରି ନାହାନ୍ତି ! ସେ ତ ଭଲ କରି ଜାଣନ୍ତି, ସୀତାଙ୍କ ଜୀବନରେ କିଛି କଳଙ୍କ ନାହିଁ । ସେ ଯେ ପରମ ସତୀ । ଅଗ୍ନି ପରୀକ୍ଷାର ଫଳ ତେବେ କଣ ଶେଷରେ ଏଇଆ ହେଲା ?

ଲବ:—ଏ ଭଳି ରାଜା, ପ୍ରଜା ଥିଲେ ରାଜ୍ୟ ଛାରଖାର ହେବାକୁ ଆଉ କେତେ କ୍ଷଣ ? ମୂର୍ଖ ପ୍ରଜାଙ୍କ କଥାରେ ଯେଉଁ ରାଜା ଏପରି କଦର୍ଯ୍ୟ କାର୍ଯ୍ୟ କରିପାରେ, ସେ ରାଜା ତ ଅନ୍ଧ ନୁହେଁ, ଅନ୍ଧ ଆଉ କିଏ ?

ବାଲ୍ମୀକି—ତୁମେମାନେ ପିଲା—ରାଜଧର୍ମ କିଛି ବୁଝି ନାହଁ । ପ୍ରଜାମାନଙ୍କୁ ତୃପ୍ତ କରିବାହିଁ ରାଜାର ପ୍ରଧାନ ଧର୍ମ । ଏଣୁ ରାମଙ୍କର କୌଣସି ଦୋଷ ନାହିଁ—ଅଧିକରେ ଏହା ଗୋଟିଏ ଗୁଣ କହିବାକୁ ହେବ ।

ସୀତା:—ରାମଙ୍କର ଯାହା ଦୋଷ ବୋଲି ମନେ କରୁଚ, ସବୁ ବଖାଣି ଗଲ । ଗୁଣ ବର୍ଣ୍ଣନ କରୁ ନାହଁ କାହିଁକି ?

ଲବ:—ଗୁଣ ବି ଢେର ଅଛି । ତାଙ୍କ ପରି ପିତୃଭକ୍ତ ପୁଅ, ବୀର ପୃଥିବୀରେ ନାହିଁ ।

କୁଶ:—ପିଲାଦିନୁ ସେ ଖୁବ୍ ସାହସରେ ଦୁଷ୍ଟ ଅସୁରଙ୍କୁ ମାରି ଆସିଛନ୍ତି ।

ଲବ:—ସେ ଉପଯୁକ୍ତ ଭାଇ ବି ପାଇଛନ୍ତି । ଲକ୍ଷ୍ମଣ, ଭରତ ପରି ଭାଇ ଆଉ ଜନ୍ମ ପାଇବେ କି ନା ସନ୍ଦେହ ।

କୁଶ:—ରାମ ଉପଯୁକ୍ତ ଭୃତ୍ୟ, ମିତ୍ର ବି ପାଇଛନ୍ତି । ହନୁମାନ ଭଳି ସେବକ, ସୁଗ୍ରୀବ, ବିଭୀଷଣ ଭଳି ମିତ୍ର କେବେ ଜନ୍ମି ନ ଥିଲେ କି ଜନ୍ମିବେ ନାହିଁ ।

ଲବ ହସି ହସି କହିଲେ:—

ତେବେ ରାବଣର ବିଭୀଷଣ ପରି ବିଶ୍ୱାସଘାତକ ଭାଇ ମଧ୍ୟ କେବେ ଜନ୍ମି ନ ଥିଲା, କେବେ ଜନ୍ମିବ ନାହିଁ । ମା ଯଦି ଡାଆଣୀ ହୁଏ ପୁଅକୁ ଲଗାଇବ କିଏ । ବିଭୀଷଣ ଭଗାରି ହୋଇ ରାବଣର ସର୍ବନାଶ କରି ପକାଇଲା ।

ବାଲ୍ମୀକି:—ଘରଭେଦୀ ବୋଲି ବିଭୀଷଣ କଣ ପର୍ଯ୍ୟନ୍ତରେ ବାଜି ରଖନ୍ତେ ?

ଲବ କୁଶ କିଛି ସମୟ ଚୁପ୍ ହୋଇ ରହିଲେ ।

ଲବ ଶେଷରେ ଜନନୀ ମୁହଁଟା ଆଡ଼କୁ ଚାହିଁ କହି ପକାଇଲେ, “ସେ ଯାହା ହେଉ, ଦଶରଥ ପରି ସ୍ତ୍ରୈଣ ରାଜା, ମନ୍ଥରା ପରି ଦୁଷ୍ଟା ଦାସୀ ସଂସାରରେ ଆଉ ଦେଖା ନ ଯାଆନ୍ତୁ—ଏଇଆ ମୋର ଇଚ୍ଛା ।”

ସେଠାରେ ଗୋଟିଏ ହାସ୍ୟରୋଳ ଉଠିଲା ।



# ଯାଗର ଯୋଗାଡ଼

ଦିନେ ରାମଚନ୍ଦ୍ର ଦରବାରରେ ବସି ରାଜକାର୍ଯ୍ୟ ବିଚାର କରୁଛନ୍ତି । ସଭାରେ ତାଙ୍କ ଭାଇମାନେ, ମନ୍ତ୍ରୀମାନେ, ବଶିଷ୍ଠ, ଜାବାଳି, କଶ୍ୟପ ପ୍ରଭୃତି ଋଷିମାନେ ବସିଛନ୍ତି । ରାମଚନ୍ଦ୍ର ତାଙ୍କର ପୁରୋହିତ ବଶିଷ୍ଠଙ୍କୁ କହିଲେ—'ରାବଣ ବ୍ରାହ୍ମଣ । ତାହାକୁ ମାରି ମୁଁ ବ୍ରହ୍ମହତ୍ୟା ପାପରେ ପଡ଼ିଛି । ଏ ପାପରୁ କିପରି ମୁକ୍ତ ହେବି କହନ୍ତୁ ।' ଅଶ୍ୱମେଧଯାଗ କରିବାପାଇଁ ବଶିଷ୍ଠ ଶ୍ରୀରାମଙ୍କୁ ଉପଦେଶ ଦେଲେ । ଆଉ ଆଉ ଋଷି-ମାନେ ମଧ୍ୟ ବଶିଷ୍ଠଙ୍କ ଉପଦେଶକୁ ପସନ୍ଦ କଲେ । ରାମଙ୍କର ମନ ମାନିଗଲା । ସେ ଅଶ୍ୱମେଧ ଯାଗର ଯୋଗାଡ଼ କରିବାକୁ ଭାଇମାନଙ୍କୁ ଆଉ ମନ୍ତ୍ରୀମାନଙ୍କୁ ଆଦେଶ ଦେଲେ ।

ଗୋମତୀ ନଦୀ ତୀରରେ ନୈମିଷାରଣ୍ୟରେ ଯାଗ କରିବା ସ୍ଥିର ହେଲା । ସେଠାକୁ ନାନା ପ୍ରକାର ଖାଦ୍ୟ ଦ୍ରବ୍ୟ ନିଆଗଲା । ଯାଗରେ ଯୋଗ ଦେବା ଲୋକଙ୍କ ପାନ ଭୋଜନର ସୁନ୍ଦର ବନ୍ଦୋବସ୍ତ କରା ହେଲା । ଲକ୍ଷେ ବଳଦ, ଦଶ ହଜାର ଗାଡ଼ି, ଦଶ ହଜାର ଷଣ୍ଢ, ଲକ୍ଷେ ଘୋଡ଼ା, ଚାଉଳ, ଡାଲି, ମୁଗ, ବିରି, କୋଳଥ, ଲୁଣ, ତେଲ, ଘିଅ, ଗନ୍ଧଦ୍ରବ୍ୟ ଇତ୍ୟାଦି ବୋହି ନୈମିଷାରଣ୍ୟକୁ ଗଲେ । ଭରତ ଶହେ କୋଟି ସୁନା ରୁପା ସଙ୍ଗେ ନେଇ ଗଲେ । ମହାଜନମାନେ, ବାଜା ବଜାଇବା, ଗାଇବା ନାଚିବା ଯୁବକ ଯୁବତୀମାନେ ଭରତଙ୍କ ସଙ୍ଗେ ଯାଇ ସେଠାରେ ହାଜର ହୋଇ ଗଲେ । ଅଯୋଧ୍ୟାର ବାଳକ ବାଳିକା, ବୁଢ଼ା ବୁଢ଼ୀ, ଦଣ୍ଡା ଢେଣ୍ଡା, ନଅରର ଦାସ ଦାସୀ, ପାଇକ ରାଉତ, ସୈନ୍ୟ ସାମନ୍ତ ସମସ୍ତେ ସେଠାରେ ଯାଇ ରୁଣ୍ଡ ହେଲେ । ଅନ୍ତଃପୁରର ସ୍ତ୍ରୀମାନେ କୌଶଲ୍ୟା, କୈକେୟୀ ଓ ସୁମିତ୍ରାଙ୍କ ସଙ୍ଗେ ସେଠାକୁ ଗଲେ । ସୀତାଙ୍କର ସୁବର୍ଣ୍ଣ ମୂର୍ତ୍ତି ସେଠାରେ ରଖା ହେଲା ।

ଗୋମତୀ ତୀରରେ ଅନେକ ଘର ତୋଳା ହେଲା । ନାନା ଦେଶରୁ ବଢ଼େଇମାନେ ଆସିଥିଲେ । ଚତୁର ଶିଳ୍ପୀମାନେ ଯାଇ ନିମନ୍ତ୍ରିତ ରାଜା-ମାନଙ୍କ ନିମନ୍ତେ ବଡ଼ ବଡ଼ ସୁନ୍ଦର କୋଠା ତିଆରି କଲେ । ମନ୍ତ୍ରିମାନଙ୍କ ପାଇଁ ଘର, ଋଷିମାନଙ୍କ ସକାଶେ କୁଡ଼ିଆମାନ ତିଆରି କରାଗଲା । ହାତୀ, ଘୋଡ଼ା, ଓଟ, ଗୋରୁ ରହିବା ପାଇଁ ଅନେକ ଘର ତୋଳା ହେଲା । କେଉଁଠି ଘମୁଣ୍ଡି ଆ, କେଉଁଠି ଚାହାଘର, କେଉଁଠି ବା ଦେଉଁ ମନ୍ଦିର ନିର୍ମିତ ହେଲା । ରାମଚନ୍ଦ୍ରଙ୍କ ପାଇଁ ଗୋଟିଏ ସୁନ୍ଦର ନଅର ତୋଳା ହେଲା । ସେଥିରେ ହୀରା ମୋତି ମାଣିକ୍ୟର ଶୃଦ୍ଦୁଆମାନ ଟଣା ହେଲା ।

ରାମଚନ୍ଦ୍ରଙ୍କର ଚାକର ଆଉ ଦୂତମାନେ ଭିନ୍ନ ଭିନ୍ନ ଦେଶକୁ ଯାଇ ଧାର୍ମିକ ରାଜାମାନଙ୍କୁ, ମୁନିଋଷିମାନଙ୍କୁ ନିମନ୍ତ୍ରଣ କରିଥିଲେ । ରାମଙ୍କର ମିତ୍ର ଓ ସାମନ୍ତ ରାଜାମାନଙ୍କୁ, ବନ୍ଧୁ, ବାନ୍ଧବ ସମସ୍ତଙ୍କୁ ଯାଗକୁ ଆମନ୍ତ୍ରଣ କରାଗଲା । ଦେଖୁଁ ଦେଖୁଁ ଅନେକ ରାଜା ନିଜ ନିଜର ସୈନ୍ୟ ରଥ, ହାତୀ, ଘୋଡ଼ା ଘେନି ନୈମିଷାରଣ୍ୟରେ ଆସି ରୁଣ୍ଡ ହୋଇ ଗଲେ । କିଷ୍କିନ୍ଧ୍ୟାରୁ ସୁଗ୍ରୀବ ସାଥିରେ ଅନେକ ମାଙ୍କଡ଼ ସେନା ଧରି ଆସିଲେ । ଲଙ୍କାରୁ ବିଭୀଷଣ ବହୁ ରାକ୍ଷସଙ୍କ ସଙ୍ଗେ ଯାଗ ସ୍ଥଳରେ ଉପସ୍ଥିତ ହେଲେ । ଜନକ ରାଜା ଥାଟ ଧରି ଆସିଲେ । ଶ୍ରୀରାମ ଶ୍ୱଶୁରଙ୍କୁ ବାଟରୁ ପାଛୋଟି ଆଣିଲେ । କୌଶଲ୍ୟା, କୈକେୟୀ ଆଉ ସୁମିତ୍ରାଙ୍କ ଭାଇମାନେ ଆସି ହାଜର ହେଲେ । ଲୋମ ପାଦ ରାଜା, ଭାଲୁରାଜା ଜାମ୍ବବ, ଗୁହକ ଶବର ପ୍ରଭୃତି ଆସିଲେ । ବ୍ରହ୍ମର୍ଷି, ଦେବର୍ଷି ଓ ରାଜର୍ଷିମାନେ ନିଜ ନିଜର ଶିଷ୍ୟମାନଙ୍କୁ ଧରି ଯାଗରେ ଯୋଗ ଦେଲେ । ନାନା ଦେଶରୁ ବ୍ରାହ୍ମଣ-ମାନେ ଆସିଥିଲେ । ରାଜ୍ୟର ଦୀନ ଦରିଦ୍ରମାନେ ଭୋଜନ ଆଶାରେ ସେଠାକୁ ଗଲେ । ଏଥିକେ ଜଣେ ଲେଖାଏଁ ଲୋକ ଜଗାଇ ଅଯୋଧ୍ୟା-ନଗରର ସମସ୍ତେ ଗୋମତୀ କୂଳରେ ଯାଇ ପ୍ରବେଶ କଲେ । ନାନା

ଦେଶରୁ ଆସି ଲୋକେ ଯାଗ ଦେଖିବାକୁ ଋଣ୍ଡ ହୋଇଗଲେ । ସେଇ କେତୋଟା ଦିନ ଅଯୋଧ୍ୟା ଶୂନ୍ୟ ହୋଇ ପଡ଼ିଲା । ଯଜ୍ଞ ସ୍ଥଳଟି ଦ୍ୱିତୀୟ ଅଯୋଧ୍ୟା ପରି ସୁନ୍ଦର, ଆଡ଼ମ୍ବରପୂର୍ଣ୍ଣ ହୋଇ ଉଠିଲା ।

ସାମନ୍ତ, ଅନୁଗତ ରାଜାମାନେ ନାନା ଭେଟି ଧରି ଆସିଥିଲେ । ସେମାନେ ରାମଙ୍କର ପଦବନ୍ଦନା କଲେ । ଶ୍ରୀରାମ ଭାଇମାନଙ୍କ ସଙ୍ଗେ ମିଶି ଆସିଥିବା ରାଜା, ଋଷି, ବ୍ରାହ୍ମଣମାନଙ୍କର ଯଥାବିଧି ଆଦର ଅଭ୍ୟର୍ଥନା କଲେ । ତାଙ୍କର ଭକ୍ତି ବିନୟ, ଆଦର ମର୍ଯ୍ୟାଦାରେ ସମସ୍ତେ ଭାରି ଖୁସୀ ହେଲେ । ବିବିଧ ବାଦ୍ୟ ନାଦରେ, ବ୍ରାହ୍ମଣ ମୁନିମାନଙ୍କ ପବିତ୍ର ବେଦପାଠ ମନ୍ତ୍ରଗାନ, ସ୍ତବସ୍ତୁତିରେ, ଶଙ୍ଖ ଧ୍ୱନିରେ ନୈମିଷାରଣ୍ୟ କମ୍ପି ଉଠିଲା । ପାଣ୍ଡି ଛତ୍ରରେ ସୂର୍ଯ୍ୟ ଆଉ ଦେଖାଗଲେ ନାହିଁ । ଲୋକ ଗହଳରେ ସେଇଠି ଯିବାକୁ ଆଉ ବାଟ ମିଳିଲା ନାହିଁ । ଠାଏଁ ଠାଏଁ ନାନା ରଙ୍ଗ ଢଙ୍ଗର ଗୀତ, ନାଚ ଲାଗିଗଲା । ସ୍ଥାନଟି ଆନନ୍ଦ ଉତ୍ସବରେ ମାତି ଉଠିଲା । ସମସ୍ତଙ୍କ ମନରେ ସନ୍ତୋଷ ଆନନ୍ଦ, ସଭିଙ୍କ ହୃଦୟରେ ଭକ୍ତି ପବିତ୍ରତା ଖେଳି ନାଚି ଉଠିଲା ।

ଯାଗଶାଳାଟି ବଡ଼ ଜାକଜମକରେ ତିଆରି କରା ହୋଇଥିଲା । ଯଜ୍ଞ କୁଣ୍ଡଟି ଦେଖିବାକୁ ବଡ଼ ଉଜ୍ଜ୍ୱଳ ଡାଉଳ । ଶ୍ରୀରାମ ଯାଗରେ ଦୀକ୍ଷିତ ହୋଇ ବସିଲେ । ପତ୍ନୀ ନ ଥିଲେ ଯାଗ ହୁଏ ନାହିଁ । ସୀତା ତ ନାହାନ୍ତି—ସୁବର୍ଣ୍ଣ ସୀତାକୁ ନେଇ ଯଜ୍ଞ ଆରମ୍ଭ କରାଗଲା । ଯେ ଯାହା ମାଗେ ରାମ ମହା ଆନନ୍ଦରେ ତାହାକୁ ତାହା କାତର ନ ହୋଇ ଦିଅନ୍ତି । ଠାଏଁ ଠାଏଁ ଅନ୍ନଛତ୍ର ବସି ଥିଲା । ଯେତେବେଳେ ଯେ ଆସିଲା, ଅତି ସନ୍ତୋଷରେ ଭୋଜନ କଲା । କେହି ମନା କରିବାକୁ ନାହିଁ, କେହି ବାଧା ଦେବାକୁ ନାହିଁ । ଯାଗସ୍ଥଳରେ 'ଦିଅ ଦିଅ' ଶବ୍ଦ ଛଡ଼ା ଆଉ କିଛି ଶୁଣା ଯାଉ ନ ଥିଲା । ମାଗିବା ଲୋକଙ୍କୁ ସନ୍ତୁଷ୍ଟ ହେବା ଯାଏଁ ଧନ

ଦେଖା ଯାଉଥାଏ । ସୁନା ଲୋଡ଼ିବା ଲୋକଙ୍କୁ ସୁନା, ଗାଈ ମାଗିବା ଲୋକଙ୍କୁ ଗାଈ ଘେର ଦାନ କରାଗଲା । କାହାର ମନରେ ଅସନ୍ତୋଷ ନାହିଁ—ସମସ୍ତେ ତୃପ୍ତ ସନ୍ତୁଷ୍ଟ । ଲୋକଙ୍କୁ କେତେ ଯେ ଲୁଗାପଟା, ସୁନା ରୁପା, ଗାଈ ଗୋରୁ, ଧନ ଅନ୍ନ ଦିଆ ଗଲା ତାହା କଳନା କରି ହେବ ନାହିଁ । ଏଭଳି ଆନନ୍ଦ ଉତ୍ସବ ବର୍ଷେ କାଳ ଚାଲିଲା ।

ଗୋଟିଏ କୃଷ୍ଣସାରବର୍ଣ୍ଣ ସୁଲକ୍ଷଣ ଅଶ୍ୱ ସଜ୍ଜିତ ହେଲା । ଘୋଡ଼ା ବେକରେ ରାମଙ୍କର ଗୋଟିଏ ପ୍ରଶଂସା ପତ୍ର ବନ୍ଧା ହେଲା । ସେଥିରେ ଲେଖା ଥିଲା—'ଏ ଘୋଡ଼ା ଅଯୋଧ୍ୟା ରାଜା ଶ୍ରୀରାମଙ୍କର । ଏହାକୁ ଯେ ଅଟକାଇ ବା ବାନ୍ଧି ରଖିବ, ତା'ସଙ୍ଗେ ଯୁଦ୍ଧ କରିବୁଁ । ଶ୍ରୀରାମ ଏକା ପୃଥିବୀରେ ବଳବନ୍ତ । ଏଣୁ ସେ ଅଶ୍ୱମେଧଯାଗ କରୁଛନ୍ତି । ଏ ଘୋଡ଼ାକୁ ସେ ଦମ୍ଭରେ ଛାଡ଼ି ଦେଇଛନ୍ତି । ପୃଥିବୀରେ କେହି ବୀର ଥିଲେ, ଆମକୁ ଜିଣି ଏ ଯାଗ କରୁ । ଘୋଡ଼ାକୁ ଯେ ଧରିବ ସେ ନିଶ୍ଚୟ ମରିବ ।'

ଶୁଭ ମୁହୂର୍ତ୍ତରେ ଘୋଡ଼ା ଛାଡ଼ି ଦେଲେ । ସେ ମନ ମୁତାବକ ଚାଲିବାକୁ ଆରମ୍ଭ କଲା । ରାମଙ୍କ ଆଜ୍ଞାରେ ଶତ୍ରୁଘ୍ନ ଅନେକ ସୈନ୍ୟ ସାମନ୍ତ ଧରି, ଅସ୍ତ୍ର ଶସ୍ତ୍ର ନେଇ ଘୋଡ଼ା ପଛେ ପଛେ ଚାଲିବାକୁ ଲାଗିଲେ । ସେଇ ଦିନଠାରୁ ଏକ ବର୍ଷ କାଳ ଯାଗ-ଘୋଡ଼ା ଯେଉଁଠି ଚାଲିବାର କଥା । ବର୍ଷ ଶେଷ ହେବା ଦିନ ଘୋଡ଼ାକୁ ବାହୁଡ଼ାଇ ଆଣିବା ଦରକାର ।

## ବାଲ୍ମୀକିଙ୍କ ଆଶ୍ରମରେ ଶତ୍ରୁଘ୍ନ

ଶ୍ରୀରାମଙ୍କର ଯଜ୍ଞ-ଅଶ୍ୱ ଗଳାରେ ଜୟପତ୍ର ଧରି ନାନା ଦେଶ ମଧ୍ୟରେ ଚାଲି ଥାଏ । ସମସ୍ତେ ଭୟରେ ବାଟ ଛାଡ଼ି ଦିଅନ୍ତି । ଯେ ବାଟ ଆଗୁଳି,

ଘୋଡ଼ା ଅଟକାଇ ଗଲେ, ଶତ୍ରୁଘ୍ନ ତା ସଙ୍ଗେ ଲଢ଼େଇ କରନ୍ତି । କେତେ ଜଣ ରାଜା ଯାଗ-ଘୋଡ଼ାକୁ ବାନ୍ଧି ରଖିବାକୁ ବାହାରିଲେ । ଶତ୍ରୁଘ୍ନ ସେମାନଙ୍କୁ ଯୁଦ୍ଧରେ ହରାଇ, ବାନ୍ଧି ରାମଙ୍କ ନିକଟକୁ ପଠାଇ ଦେଲେ । ଶ୍ରୀରାମ ବନ୍ଧନ ଫିଟାଇ ସେଇ ରାଜାମାନଙ୍କୁ ସମ୍ମାନ କଲେ । ଏପରି ପ୍ରାୟ ଏଗାର ମାସ କଟିଗଲା ।

ଯାଗର ବର୍ଷ ପୂରିବାକୁ ଆଉ ପ୍ରାୟ ମାସେ ମାତ୍ର ବାକୀ ଅଛି । ଏ ସମୟରେ ଦିନେ ଘୋଡ଼ା ଯାଇ ବାଲ୍ମୀକିଙ୍କ ଆଶ୍ରମ ନିକଟରେ ପହଞ୍ଚିଲା । ଶତ୍ରୁଘ୍ନ ସୈନ୍ୟ ଧରି ଆଶ୍ରମରୁ ପ୍ରାୟ କୋଶେ ଦୂରରେ ବିଶ୍ରାମ ନେଲେ । ସେ ଦିନ ଘୋଡ଼ାଟି ଇଚ୍ଛାନୁସାରେ ବାଲ୍ମୀକିଙ୍କ ତପୋବନରେ ଯାଇ ଚରୁଥିଲା । ସେତେବେଳେ ମୁନି ଆଶ୍ରମରେ ନ ଥିଲେ । ଶିଷ୍ୟ-ମାନଙ୍କୁ ସଙ୍ଗେ ନେଇ ଚିତ୍ରକୂଟ ପର୍ବତରେ ତପସ୍ୟା କରୁ ଥାନ୍ତି ।

ତାଙ୍କ ଆଶ୍ରମ, ତପୋବନ ଯତ୍ନରେ ଜଗିବା ପାଇଁ ବାଲ୍ମୀକି ଲବ କୁଶଙ୍କୁ କହି ଯାଇଥିଲେ । ମୁନିଙ୍କ ଆଜ୍ଞାରେ ଲବକୁଶ ଧନୁଶର ଧରି ତପୋବନ ଜଗିଥାନ୍ତି । ଦିନେ ଦୁଇ ଭାଇ କୌତୁକରେ ବୁଲିବାବେଳେ ଦେଖିଲେ ଯେ, ଆଶ୍ରମ ପାଖରେ ଘୋଡାଟିଏ ଚରୁଛି । ଦୁହେଁ ସେଇକ୍ଷଣି ଘୋଡ଼ା ପାଖକୁ ଧାଇଁ ଗଲେ । ତା'ଗଳାର ପ୍ରଶଂସା-ପତ୍ରଟି ପଢ଼ିଲେ । କ୍ଷତ୍ରିୟ ସନ୍ତାନ ବୀର, ପିଲା—ରାମଙ୍କ ପ୍ରଶଂସା ସହୁଛନ୍ତି କେତେକେ ? ପତ୍ରଟି ପଢ଼ିବାକ୍ଷଣି ଦି'ଭାଇଙ୍କ ମନରେ ଭୟଙ୍କର କ୍ରୋଧ ଜଳି ଉଠିଲା । ଦୁହେଁ ବୀର ଗର୍ବରେ ଫୁଲିଗଲେ । କାହିଁକି ବା ନ ଫୁଲନ୍ତେ ? ସେମାନେ ଯେ ବୀର ରାମଙ୍କର ବୀର ପୁତ୍ର । ରାଗରେ ଅଥୟ ହୋଇ ସେମାନେ ଘୋଡ଼ାକୁ ନେଇ ଗୋଟିଏ ଗଛରେ ବାନ୍ଧି ଦେଲେ । ପତ୍ରଟି ତା ଗଳାରୁ ବାହାରି କରି ଚିରି ଫୋପାଡ଼ି ଦେଲେ ।

ଏତିକିବେଳେ ଶତ୍ରୁଘ୍ନ ଘୋଡ଼ା ଖୋଜି ଆଣିବାକୁ ଲୋକ ପଠାଇଲେ । ଲୋକମାନେ ବାଲ୍ମୀକି ଆଶ୍ରମରେ ଯାଇ ଦେଖିଲେ, ଘୋଡ଼ାଟି ଗଛରେ ବନ୍ଧା ହୋଇଛି, ଖଣ୍ଡେ ଦୂରରେ ଦୁଇ ଜଣ ତେଜୀୟାନ୍ ବାଳକ ଧନୁ ଧରି ସିଂହଛୁଆ ପରି ଗର୍ବରେ ବସିଛନ୍ତି । ଦୁହିଁଙ୍କ ବସିବାର ଠାଣି ଦେଖି ଲୋକମାନେ ଆଶ୍ଚର୍ଯ୍ୟ ହୋଇଗଲେ । ସେଠାରୁ ଧାଇଁ ଯାଇ ଶତ୍ରୁଘ୍ନଙ୍କୁ ଏ କଥା ଜଣାଇଲେ ।

ଶତ୍ରୁଘ୍ନ କୋପରେ ଅଧୀର ହୋଇ ପଡ଼ିଲେ । ସୈନ୍ୟ ଧରି ଆଶ୍ରମକୁ ଧାଇଁଗଲେ । ରାଗରେ ଗର୍ଜ୍ଜନ କରି ଲବକୁଶଙ୍କୁ କହିଲେ—'ତୁମେମାନେ ଜାଣିଶୁଣି କାଳକୂଟ ବିଷ ଖାଉଛ କିଆଁ ? ନାଗସାପ ଲାଞ୍ଜରେ କାନ କୁଣ୍ଡାଉଛ କାହିଁକି ? ଛାଡ଼ି ଦିଅ ଚଞ୍ଚଳ ଘୋଡ଼ାକୁ ।'

ଲବ କୁଶ ହଠାତ୍ ଉଠି ଠିଆ ହୋଇଗଲେ । ଲବ ଭରତଙ୍କୁ ଅନାଇଁ କହିଲେ—'କିଏ ହେ ତୁମେ ? କାହାର ପୁଅ, କେଉଁ ଦେଶର ଲୋକ ? ଘୋଡ଼ା ନେବାକୁ ଆସିଛ ପରା ! ଆଗେ ଯୁଦ୍ଧରେ ଆମକୁ ଜିଣ, ପରେ ନେବ ଘୋଡ଼ା । ନ ଲଢ଼ି ଏପରି ବକୁଛ କିଆଁ ? ପାଗଳ ହେଲ !'

ଶତ୍ରୁଘ୍ନ ନିଜର ପରିଚୟ ଦେଲେ, ଯାଗର କଥା ବୁଝାଇଲେ । ହସି ହସି ପଚାରିଲେ—'ତୁମେମାନେ କିଏ ? କାହାର ପୁଅ ? ଘର କେଉଁଠି ? ଯୁଦ୍ଧକୁ ଖେଳ ମନେ କରୁଚ, ଆଶ୍ଚର୍ଯ୍ୟର କଥା ! ଷେଠ ସୁକୁମାର ଶିଶୁଙ୍କ ସଙ୍ଗେ ଲଢ଼ିବା ଅସୁନ୍ଦର । ଯୁଦ୍ଧ କଲେ ଜଗତ ଛି ଛି କରିବ । ଏଣୁ ତୁମମାନଙ୍କର ଦୋଷ କ୍ଷମା କରି କହୁଛି, ଘୋଡ଼ା ଛାଡ଼ି ଦିଅ ।'

ଲବ:— ତୁମ କ୍ଷମା ଦୟା ଆମେ ଚାହୁଁ ନା । ଯେ ତୁମର ଯାଗ-ଘୋଡ଼ା ବାନ୍ଧିଛି, ସେ ତୁମର ଶତ୍ରୁ । ଆମେ ଏହା ଜାଣି ବାନ୍ଧିଛୁ । ଆମ ପରାକ୍ରମରୁ ପାରିବ କିଏ ? ବଳ ଥିଲେ ଯୁଦ୍ଧ କରି ଘୋଡ଼ା ନିଅ ।

କୁଶ:— ନ ପାରିଲେ ଚଞ୍ଚଳ ଫେରି ଯାଅ ।

ଶତ୍ରୁଘ୍ନ ଆଉ ସହି ପାରିଲେ ନାହିଁ । କ୍ରୋଧରେ ଦୁଇ ପିଲାଙ୍କୁ ମାରିବାପାଇଁ ସୈନ୍ୟଙ୍କୁ ଆଦେଶ କଲେ । ସୈନିକମାନେ ଯେ ଯାହାର ଅସ୍ତ୍ର ଧରି ଯୁଦ୍ଧରେ ମାତିଗଲେ । ଲବ କୁଶ ଭୟ କରିବାର ବାଳକ ନୁହନ୍ତି । ଦୁହେଁ ଅଣ୍ଟା ଭିଡ଼ି ବାହାରି ପଡ଼ିଲେ । ଭୟଙ୍କର ଲଢ଼େଇ ଚାଲିଲା । ମନେ ହେଲା, ସତେ ଯେପରି ଦୁଇଗୋଟି ସିଂହପିଲା ଘୋର ଗର୍ଜନ କରି ହେଳ ପଲ ଦଳି ଯାଉଛନ୍ତି ! ଘଡ଼ିକ ଭିତରେ ଲବକୁଶ ଶତ୍ରୁପକ୍ଷର ହାତୀ ଘୋଡ଼ା ରଥୀ ସୁଭଟ ମାନଙ୍କୁ ସମସ୍ତଙ୍କୁ ମାରି ହାଣି ପଦା କରି ଦେଲେ । ରକ୍ତ ନଈ ବହିଗଲା । ବାପ୍ ରେ, ପିଲାଯୋଦ୍ଧାଙ୍କର କି ଯୁଦ୍ଧ ! ଦୁହିଁଙ୍କର ତେଜ ଆଉ ସାହସରେ ଶତ୍ରୁଘ୍ନ ଏକାବେଳକେ ତଟସ୍ଥ !

ତେବେ ଭୁମି ଚାହିଁ ବା ଫଳ କଣ ? ଶତ୍ରୁଘ୍ନ ଯୁଦ୍ଧକୁ ତେଇଁ ପଡ଼ିଲେ । ଦଶ ଦିଗପାଳଙ୍କୁ ସାକ୍ଷୀ ରଖି କହିଲେ—'ମୋ ବାଣରେ ପର୍ବତ ଫାଟିଯାଏ, ସମୁଦ୍ର ଶୁଖି ପଡ଼େ । ପିଲା ଦିଓଟିଙ୍କୁ ମାରିବାକୁ ଯାଉଛି । ମୋ'ର ଦୋଷ ନାହିଁ ।' କୁଶ ହସି ହସି ବୋଇଲେ—'ଯୁଦ୍ଧକୁ ଡରି ପ୍ରଳାପ କରୁଛ କିଆଁ ହେ ବୀର ? ବୋଧହୁଏ ତୁମେ କ୍ଷତ୍ରିୟର ପୁଅ ନୁହ ।'

ଶିଶୁର ଏ କଡ଼ା କଥା ଶତ୍ରୁଘ୍ନ ସହୁଛନ୍ତି କେତେବେ ? ସେ କ୍ଷୀଣ ମାତ୍ର ଦଶ ଦିଗ ଅନ୍ଧାର କରି ପକାଇଲେ । ଶତ୍ରୁଘ୍ନ ରାଗରେ

ଯେତେ ବାଣ ମାରନ୍ତି, ଲବ ଗୋଟିଏ ଶରରେ ସେ ସବୁ କାଟି ଖଣ୍ଡ ଖଣ୍ଡ କରି ଦିଅନ୍ତି । ଶେଷରେ କୁଶ କହିଲେ—'ଶତ୍ରୁଘ୍ନ ! ତୁମେ ତ ଏତେ ବାଣ ବର୍ଷିଲଣି ! ଏବେ ଯଦି ମୋର ଗୋଟିଏ ବାଣ ସହିପାର, ତାହାହେଲେ ଜାଣିବି—ତୁମେ ବୀର, କ୍ଷତ୍ରିୟର ପୁଅ ।' ଏହା କହି କୁଶ ବାଲ୍ମୀକିଙ୍କି ସ୍ମରଣ କରି 'ମହାପାଶ' ବୋଲି ଗୋଟିଏ ଶର ଜୋରରେ ଛାଡ଼ିଦେଲେ । ବାଣଟି ପ୍ରଚଣ୍ଡ ଗର୍ଜ୍ଜନ କରି ଉଡ଼ିଲା । ଶତ୍ରୁଘ୍ନ ତାହା ବାରଣ କରି ପାରିଲେ ନାହିଁ । ଦେଖୁଁ ଦେଖୁଁ କୁଶଙ୍କ ବାଣଟି ଶତ୍ରୁଘ୍ନଙ୍କର ହାତ ଗୋଡ଼ ବାନ୍ଧି ପକାଇଲା । ଶତ୍ରୁଘ୍ନ ଅଚେତନ ହୋଇ ତଳେ ପଡ଼ି ଗଡ଼ିଗଲେ । ଲବ କୁଶଙ୍କର ଆନନ୍ଦ ସେତେବେଳେ ଦେଖୁଛି କିଏ ?

ଶତ୍ରୁଘ୍ନଙ୍କର ସାତ ଜଣ ମାତ୍ର ସୈନିକ ଜୀବନ ଧରି ରାମଙ୍କଠାକୁ ଧାଇଁ ଗଲେ । ଉଧୁରେ ଥରି ଏ ସବୁ କଥା ଜଣାଇଲେ । ଶ୍ରୀରାମ ତାଟକା ହୋଇଗଲେ । ଦୁଃଖରେ ତାଙ୍କ ହୃଦୟ ବିଦାରି ହୋଇ ପଡ଼ିଲା । କପାଳରେ ହାତ ମାରି ବୋଇଲେ—'ଆହା, ପରମ ସତୀ ସୀତାଙ୍କୁ ବିନା ଦୋଷରେ ତଡ଼ିବାରୁ ଏପରି ବିପତ୍ତି ଘଟୁଛି ।' ଭରତ ଆଉ ଲକ୍ଷ୍ମଣ ରାମଙ୍କୁ ପ୍ରବୋଧ ଦେଇ କହିଲେ—'ପ୍ରଭୋ, ବିପଦବେଳେ ଅଧୈର୍ଯ୍ୟ ହେବା ବୀରର ଧର୍ମ ନୁହେ, କ୍ଷତ୍ରିୟର କାର୍ଯ୍ୟ ନୁହେ । ଆଜ୍ଞା ଦିଅନ୍ତୁ—ଆମେ ଦୁହେଁ ଯାଇ ସେଇ ଦୁଷ୍ଟ ଶିଶୁଙ୍କୁ ବାନ୍ଧି ଆଣିବୁଁ ।'

ଯୁଦ୍ଧକୁ ଯିବା ପାଇଁ ରାମ ଦି ଭାଇଙ୍କି ଅନୁମତି ଦେଲେ । ଭରତ, ଲକ୍ଷ୍ମଣ ଆଉ ବିଳମ୍ବ ନ କରି ସିପାହୀ ସଙ୍ଗେ ବାଲ୍ମୀକି ଆଶ୍ରମକୁ ଯାଇଁଗଲେ ।



# କକା ପୁତୁରାମାନଙ୍କ ଲଢ଼େଇ

ଶତ୍ରୁଘ୍ନଙ୍କୁ ମାରି ଲବ କୁଶ ଆଶ୍ରମକୁ ବାହୁଡ଼ିଲେ । ସୀତା ସେମାନଙ୍କୁ ଖାଇବାକୁ ମିଷ୍ଟାନ୍ନ, ଫଳ ଦେଲେ । ଖାଇସାରି ଦୁଇ ଭାଇ ଘୋଡ଼ା ପାଖକୁ ପୁଣି ଯିବାକୁ ତରତର ହେଲେ । ସୀତା ସେମାନଙ୍କୁ ଶୋଇବାକୁ କହିବାରୁ ଲବ କହିଲେ—'ଆମକୁ ବନ ଜଗିବାକୁ ଗୁରୁ କହି ଯାଇଛନ୍ତି । ଆଜ୍ଞା ଲଂଘନ କଲେ ତାଙ୍କର କ୍ରୋଧ ହେବ । ରାଜାମାନେ ଆସି ତପୋବନରେ ମୃଗ ମାରୁଛନ୍ତି ।'

ସୀତା ଦୁଇ ପିଲାଙ୍କ ଦେହରେ ଅଗୁରୁ ଚନ୍ଦନ ଲେପି ଦେଲେ । ଦୁହିଁଙ୍କି କିଛି ସମୟ କୋଳେଇ ଚୁମ୍ବନ କଲେ । ଯିବାବେଳେ କହିଲେ—'ବନରେ ତୁମେମାନେ କାହା ସଙ୍ଗେ କଳି କଜିଆ କରିବ ନାହିଁ ।' ଲବ କୁଶ ତପୋବନକୁ ଧାଇଁଗଲେ ।

କିଛି ସମୟ ଉତ୍ତାରୁ ଭରତ, ଲକ୍ଷ୍ମଣ ସୈନ୍ୟ ଧରି ମନ୍ତ୍ରିମାନଙ୍କ ସଙ୍ଗେ ସେଠାରେ ହାଜର ହୋଇ ଗଲେ । ଦେଖିଲେ ତପୋବନଟି ବିଲୁଅ, କୁକୁର, ଶାଗୁଣାରେ ପୂରି ଚହଳିଛି—ଅନେକ ଶବ ରକ୍ତରେ ଭାସି ଯାଉଛି । ଭରତ ଓ ଲକ୍ଷ୍ମଣ ଶତ୍ରୁଘ୍ନଙ୍କୁ କୋଳରେ ଧରି ଗୁଡ଼ାଏ କାନ୍ଦିଲେ । ମନ୍ତ୍ରୀମାନେ ସାନ୍ତ୍ୱନା ଦେଲେ । ପରେ ଦ'ଭାଇ ଯୁଦ୍ଧ ପାଇଁ ପ୍ରସ୍ତୁତ ହୋଇ ଉଠିଲେ । ସାପକୁ ଦେଖି ବେଙ୍ଗ ଯେପରି ଡରି ଥରି ଯାଏ, ଲବ କୁଶଙ୍କୁ ଦେଖି ସମସ୍ତଙ୍କ ପ୍ରାଣରେ ସେପରି ଭୟ ହେଲା । ସୈନିକମାନେ ପଛଘୁଞ୍ଚା ଦେଲେ—ବିଚାର କଲେ, ଲବ କୁଶ ସାକ୍ଷାତ୍ ଯମଦୂତ । ଲବ କୁଶଙ୍କ ମଧ୍ୟରେ ସାନ କିଏ ବଡ଼ ବା କିଏ କିଛି ଜଣା ଯାଉ ନାହିଁ । ଦୁହିଁଙ୍କ ରୂପ ସମାନ, ଗଢ଼ଣ ସମାନ, ବେଶର ଢଙ୍ଗ ବି ସମାନ । ଉଭୟେ ଠିକ୍ ରାମଙ୍କ ଭଳି ଦେଖା ଯାଉଛନ୍ତି । ସମସ୍ତେ

ବସ୍ମିତ ହୋଇ ଗଲେ । ସୈନ୍ୟ ମଧ୍ୟରୁ କେହି କେହି କହିଲେ, ଲବ କୁଶ ମାନବଶିଶୁ ନୁହନ୍ତି—ସାକ୍ଷାତ୍ ଦେବଶିଶୁ । କେହି କେହି କହିଲେ ଯେ, ଦୁହେଁ ଠିକ ରାମଙ୍କର ମୂର୍ତ୍ତି । କେହି କେହି ବା କହିଲେ, ଅଗ୍ନି ଆଉ ସୂର୍ଯ୍ୟ ମିଳିମିଶି ଲଢ଼ିବାକୁ ଆସିଛନ୍ତି ।

ଭରତ ଓ ଲକ୍ଷ୍ମଣ ଦୁଇ ଶିଶୁଙ୍କର ପରିଚୟ ଲୋଡ଼ିଲେ । ଏକାଳ ଅଜ୍ଞାତ ଶିଶୁଙ୍କର ପରିଚୟ ନ ଲୋଡ଼ିବ ବା କିଏ? କୁଶ ଉତ୍ତର କଲେ—'ଆମେ ବାଲ୍ମୀକି ମୁନିଙ୍କର ଶିଷ୍ୟ । ଆମର ନାମ ଘର, ଜାତି କୁଳ ପଚାରି ଲାଭ କଣ ? ଲଢ଼ିବାକୁ ଆସିଚ, ଲଢ଼ି ମର । ନ ପାରିବ ଯଦି, ଫେରି ଯାଅ ।' ଭରତ ହାତୀପିଠିରେ ବସି କୁଶ ସଙ୍ଗେ ଯୁଦ୍ଧ ଆରମ୍ଭ କରି ଦେଲେ । ଲକ୍ଷ୍ମଣ ରଥରେ ବସି ଲବ ସାଥିରେ ଲଢ଼ିବାକୁ ଲାଗିଲେ । ଲବ କୁଶ ଧନୁର ଟଙ୍କାରରେ ତିନି ପୁର କମ୍ପାଇ ଦେଲେ । ଧନୁ ଧରି ଚମତ୍କାର ଶର ବନ୍ଧ ସୃଷ୍ଟି କରି ଅନ୍ଧକାରରେ ଘୋଡ଼ାଇ ପକାଇଲେ । ଶତ୍ରୁ ସୈନ୍ୟ ଭୟରେ ଥରହର ହୋଇ ଯୁଦ୍ଧ ଛାଡ଼ି ପଳାଇଲେ । ଲକ୍ଷ୍ମଣ ଲକ୍ଷ ଲକ୍ଷ ଦିବ୍ୟ ବାଣ ଗୁଣରେ ବସାଇ ବର୍ଷିବାକୁ ଲାଗିଲେ । ପୃଥିବୀ ଘନ ଘନ କମ୍ପି ଉଠିଲା । ମାତ୍ର ଲବଙ୍କ ଶରରେ ସେ ସବୁ ବାଣ ଖଣ୍ଡ ଖଣ୍ଡ ହୋଇ ପଡ଼ୁଥାଏ । ଶ୍ରାବଣ ଭାଦ୍ରବ ମାସର ନଈବଢ଼ି ପରି ଲକ୍ଷ୍ମଣଙ୍କ କ୍ରୋଧ ବେଳକୁ ବେଳ ବଢ଼ି ଉଠୁଥାଏ । ଦେବଶର, ବ୍ରହ୍ମଶର, ଇନ୍ଦ୍ର, ଅଗ୍ନି, ରୁଦ୍ର, ନାଗପାଶ ଇତ୍ୟାଦି ବାଣ ବନ୍ଧ ଲକ୍ଷ୍ମଣ ହାଲିଆ ହୋଇଗଲେ । ଲବ 'ପାଶୁପତ' ନାମରେ ଗୋଟିଏ ଶର ଛାଡ଼ି ଦେଲେ ! ସେଥିରେ ଲକ୍ଷ୍ମଣଙ୍କର ଚେତା ହଜିଗଲା—ସେ ରଥରୁ ତଳକୁ ଖସି ପଡ଼ିଲେ ।

ତେଣେ କୁଶ ସାଥିରେ ଭରତଙ୍କର ଯୁଦ୍ଧ ଲାଗିଥାଏ । କୁଶଙ୍କର 'ମହାକାଳ' ବୋଲି ଗୋଟିଏ ଶର ଘୋର ଗର୍ଜନ କରି ଆସି ଭରତରେ

ପଶିଗଲ୍ । କାହାର ମୁଣ୍ଡ, କାହାର ପାଦ, କାହାର ବା ହାତ କାଟି ପକାଇଲ୍ । ଶେଷରେ 'ଐଷିକ ବାଣ'ଟି ଜୋରରେ ଛାଡ଼ି ଦେଲେ । ତାହାର ପ୍ରଚଣ୍ଡ ଆଘାତରେ ଭରତ ମୂର୍ଚ୍ଛିତ ହୋଇ ପଡ଼ିଲେ । ଭରତ, ଲକ୍ଷ୍ମଣଙ୍କ ସବୁ ସୈନ୍ୟ ପ୍ରାଣ ହରାଇଲେ—ପାଞ୍ଚ ଜଣ ମାତ୍ର ଫିଟି ଗଲେ, ରାମଙ୍କୁ ଏ ଖବର ଦେଲେ । ଲବ କୁଶ ସିଂହନାଦ କରି, ବୀର ଗର୍ବରେ ନାଚି ନାଚି ମା'ଙ୍କ ପାଖକୁ ଫେରି ଗଲେ । ତାଙ୍କ ଯୁଦ୍ଧ କଥା କିଛି କହନ୍ତି ନାହିଁ ।

---

## ପୁଅ ସଙ୍ଗେ ବାପାର ଯୁଦ୍ଧ ।

ଭରତ, ଲକ୍ଷ୍ମଣଙ୍କର ମରଣ ଖବର ପାଇ ରାମ ଶୋକରେ ଢଳିଗଲେ, ବହୁତ ବିଳାପ କଲେ । ସୁଗ୍ରୀବ, ବିଭୀଷଣ ତାଙ୍କୁ ପ୍ରବୋଧ ଦେଲେ । ସୁଗ୍ରୀବ ମାଙ୍କଡ଼ ସୈନ୍ୟ ଆଉ ବିଭୀଷଣ ଅସୁରସେନା ସଜ୍ଜିତ କଲେ । ହନୁମାନ, ଅଙ୍ଗଦ, ଜାମ୍ବବାନ ଆଉ ନଳ ନୀଳ ସୁଷେଣ ପ୍ରଭୃତି ବଡ଼ ବଡ଼ କପିମାନେ ରାମଙ୍କ ସଙ୍ଗେ ବାହାରିଲେ । ଭରତଙ୍କର ଦୁଇ ପୁଅ ତକ୍ଷ, ପୁଷ୍କଳ—ଲକ୍ଷ୍ମଣଙ୍କ ପୁଅମାନେ ଚନ୍ଦ୍ରକେତୁ ଆଉ ଅଙ୍ଗଦ—ଶତ୍ରୁଘ୍ନଙ୍କ ଦ ପୁଅ ସୁବାହୁ ଓ ଶତ୍ରୁଘାତୀ, ଏମାନେ ମଧ୍ୟ ଶ୍ରୀରାମ ସହିତ ଯୁଦ୍ଧକୁ ଯିବାକୁ ପ୍ରସ୍ତୁତ ହୋଇଗଲେ । ଅନେକ ରାଜା ମଧ୍ୟ ଅଗ୍ରସର ହେଲେ । ଅକଳନା ଥାଟ ବାଲ୍ମୀକି ଆଶ୍ରମ ଆଡ଼କୁ ଚାଲିଲ୍ । ବାଟରେ ଧୂଳି ଉଡ଼ି ଆକାଶ-ମଣ୍ଡଳ ବ୍ୟାପିଗଲ୍ ।

ଅଗଣନ୍ତି ସେନା ଦେଖି ଲବଙ୍କ ମନରେ ଟିକିଏ ଡର ହେଲ୍ । କୁଶ ତାଙ୍କୁ ଧୈର୍ଯ୍ୟ ଦେଇ କହିଲେ—'ବାଲ୍ମୀକି ମୁନିଙ୍କର ଶିଷ୍ୟ ହୋଇ

ଆମେ ଯୁଦ୍ଧରେ ହାରିଲେ ଲୋକେ ନିନ୍ଦା କରିବେ—ଗୁରୁଙ୍କର ମନ୍ଦହୁ ଯିବ । ଭୟ କର ନା । ବୀରକୁ ଜିଣିଲେ ସିନା ବୀର ବୋଲାଇବା । ସବୁ ସୈନ୍ୟ ମୋ ଭାଗରେ ରହିଲେ । ତୁମେ ଏକଲା ରାମଙ୍କ ସାଥିରେ ଲଢ଼େଇ କର ।' ଲବ ଦମ୍ଭ ଧରି ବାହାରି ପଡ଼ିଲେ ।

ରାମଚନ୍ଦ୍ର ଦୁଇ ପିଲାଙ୍କୁ କହିଲେ—'ମୁଁ ଦଶରଥଙ୍କ ପୁଅ ରାମଚନ୍ଦ୍ର । ତୁମେ ଦୁହେଁ ଠିକ୍ ମୋ ପରି ଦିଶୁଛ । କାହାର ପୁଅ ତୁମେମାନେ ? ତୁମେମାନେ ମୋ'ର ପୁଅ ହୋଇ ଥିଲେ, ଯୁଦ୍ଧ ନ କରି ଚାଲିଯିବ ।'

କୁଶ:—ଆମେମାନେ କାହାର ପୁଅ, ଜାଣି ନାହୁଁ । ତେବେ ଯୁଦ୍ଧକୁ ଆସି ବାପ ନା ପଚାରିବା ବୀରର କାମ ନୁହେ । ଆମ ସାଥିରେ ଲଢିବାକୁ ଡରିଲେ, ଶରଣ ପଶ—ଆଉ ମାରିବୁ ନାହିଁ ।

ଏ କଟୁ କଥାରେ ରାମ କୋପରେ ପାଗଳ ହୋଇ ଉଠିଲେ । ଯୁଦ୍ଧ ଆରମ୍ଭ କରିବା ପାଇଁ ସୈନ୍ୟଙ୍କୁ ଆଦେଶ କଲେ । ଲଢ଼େଇ ଉଗ୍ର ମୂର୍ତ୍ତି ଧରି ଉଠିଲା । ଲବ 'ଅଦ୍ଭୁତ' ନାମରେ ଗୋଟିଏ ଶର ଛାଡ଼ିଦେବା କ୍ଷଣି ଲକ୍ଷ ଲକ୍ଷ ହାତୀ, ଘୋଡ଼ା ମରିଗଲେ । କୁଶଙ୍କର 'ଅଶ୍ୱଜିତା' ନାମକ ବାଣରେ ରାଉତ ମାହୁନ୍ତମାନଙ୍କର ମୁଣ୍ଡ ଛିଡ଼ି ପଡ଼ିଲା । ଲବ କୁଶ ମନେ ମନେ ବାଲ୍ମୀକି ଆଉ ସୀତା ଦେବୀଙ୍କି ଧ୍ୟାନ କରି ଶର ଛାଡ଼ୁଥାନ୍ତି । ଦୁହେଁ ସିଂହ-ସାହସରେ ମାଢ ଭାଲୁ, ମାକଡ଼ ସୈନ୍ୟ ସବୁ ମାରି ପକାଇଲେ । ସୁଗ୍ରୀବ, ହନୁମାନ, ଅଙ୍ଗଦ, ଜାମ୍ବବାନ ପ୍ରଭୃତି ପଡ଼ିଗଲେ—ସେମାନଙ୍କର ଚେତା ଚବେର ନାହିଁ । ଶେଷକୁ ରହିଲେ ରାମ, ଆଉ ତାଙ୍କର ଛଅ ପୁତୁରା ।

ରାମଚନ୍ଦ୍ର ପୁତୁରାମାନଙ୍କୁ ଅନାଇଁ ବିକଳ ସ୍ୱରରେ କହୁଥିଲେ—'ବଡ଼ ବଡ଼ ରଥୀମାନେ ପଡ଼ିଗଲେ । ମୁଁ ମଧ୍ୟ ଯୁଦ୍ଧ କରି ପ୍ରାଣ ଦେବ ।



ମୁନିଙ୍କ ଆଜ୍ଞାରେ ତପୋବନ ଜଗିଥାନ୍ତୁ···[ଲବ କୁଶ ପୃଷ୍ଠା ୨୯]

ତୁମେମାନେ ଅଯୋଧ୍ୟାକୁ ବାହୁଡ଼ ବଶିଷ୍ଠଙ୍କୁ ଏ ସମ୍ବାଦ ଦିଅ । ଆମ-ମାନଙ୍କର ପ୍ରେତକାର୍ଯ୍ୟ କର, ରାଜ୍ୟ ପାଳନ କର । ତୁମେମାନେ ମଲେ ଆମ ବଂଶ ବୁଡ଼ି ଯିବ । ମୋ କଥା ଶୁଣ—ଚାଲି ଯାଅ ।'

ସୂର୍ଯ୍ୟବଂଶର ବୀରମାନେ ଯୁଦ୍ଧରେ କଣ ପଛଘୁଞ୍ଚା ଦେବେ ? ନା—ଦେଲେ ନାହିଁ । ରାମଙ୍କୁ କହିଲେ—'ଆମେ ଥାଉଁ ଥାଉଁ ତୁମର କି ଭୟ ? ସବୁ ଯାଉ ମହତ୍ତ୍ୱ ଥାଉ । ବଂଶ ବୁଡ଼ୁ—ଦୁଃଖ ନାହିଁ । ମାନ ମହତ୍ତ୍ୱ ଗଲେ, ବଂଶ ଥାଇ ବା ଲାଭ କଣ ? ଆମେ ବରାବର ଲଢିବୁଁ ।'

ଛ'ଭାଇ ମିଶି ଲବ କୁଶଙ୍କ ସଙ୍ଗେ ଉଗ୍ର ଯୁଦ୍ଧରେ ମାତି ଗଲେ । ଲବ 'ଅଗ୍ନିମୁଖ' ନାମରେ ଗୋଟିଏ ବାଣ ପେଷିଦେବାମାତ୍ରକେ, ପାଞ୍ଚ ଭାଇ ସଂଜ୍ଞା ହରାଇ ପଡ଼ିଗଲେ—ରହିଲେ ଏକା ଚନ୍ଦ୍ରକେତୁ । ଲବ ହସି ହସି ଚନ୍ଦ୍ରକେତୁଙ୍କୁ ବୋଇଲେ—'କେଉଁଣି ପର ତୁ କାହିଁ ମିଛଟାରେ ଫର ଫର ହେଉଚୁ ? ରାମ ପରା ବଡ଼ ବୀର—ତାଙ୍କୁ ଡାକି ଆଣ । ତୁ କେଣେ ଆଗେ ପ୍ରାଣ ଦେବାକୁ ବସିଚୁ ?'

ଚନ୍ଦ୍ରକେତୁଃ—ତୁମେ ଦି ଟୋକା ଏଡ଼େ ଠାଣ କରୁଚ କୋ' ମୁହଁରେ ? ରାମଙ୍କ ସାଙ୍ଗରେ ଯୁଦ୍ଧ କରିବାକୁ ସାହସ ବାନ୍ଧିଚ ! ପାଗଳ ହେଲ ! ଶଶା କଣ କେବେ ସିଂହକୁ ମାରିପାରେ ? ଛୁଞ୍ଚି ମୁନରେ ପର୍ବତ ଟାଳିବାକୁ ଇଚ୍ଛା କରୁଚ କାହିଁ ? ଯୁଦ୍ଧ ଭୂଇଁଟା ମା'ର କୋଳ ନୁହେ ଯେ, ହସି ନାଚି ଖେଳ କୌତୁକ କରିବ । ଫେରିଯାଅ, ଫେରିଯାଅ ।

କୁଶଃ—ତୋ କଥା ଶୁଣି ହସ ମାଡୁଚି । ଯେଉଁ ଦେଶରେ ଗଛ ନ ଥାଏ, ସେଠା ଲୋକେ ଗବଗଛକୁ ବି ବଡ଼ କରି ନେଇଥାନ୍ତି । ରାମଙ୍କୁ ସେପରି ତୁ ବଡ଼ ମନେ କରୁଛୁ ସିନା !

ଚନ୍ଦ୍ରକେତୁ:—ଯେ ତାଡ଼କା ରାକ୍ଷସୀକୁ ମାରିଛନ୍ତି, ଗୋଟିଏ କାଣ୍ଡରେ ବାଳିର ପ୍ରାଣ ନେଇଛନ୍ତି, ପ୍ରକାଣ୍ଡ ଶିବଧନୁ ଭାଙ୍ଗିଛନ୍ତି, ଯା ହାତରେ ଦଶମୁଣ୍ଡ ରାବଣ ମରିଛି, ସେ ତ ବଡ଼ ନୁହେ, ଜଗତରେ ବଡ଼ ଅଉ କିଏ ? ବିନାଶ କାଳେ ବିପରୀତ ବୁଦ୍ଧି ହେଲାଣି ତୋର !

ଲବ:—ଭାରି ବଡ଼ୁଆ ତ ରାମ ! ବୁଢ଼ୀ ରାକ୍ଷସୀଟାକୁ ମାରି ଦେଲା, ବୁଢ଼ା ମାଙ୍କଡ଼କୁ କାଣ୍ଡ ବିନ୍ଧି ମାରିଲା, ଭଙ୍ଗା ଦଦରା ପୁରୁଣା ଧନୁଟାଏ ଭାଙ୍ଗି ପକାଇଲା, ବୁଢ଼ା ବ୍ରାହ୍ମଣରାଜା ରାବଣକୁ ମାରିଦେଲା । ବଡ଼ କଥାଟାଏ କରିଦେଲା ! ତାର ପ୍ରଶଂସା ଗାଉଚୁ ! ଲାଜ ମାଡ଼ୁ ନାହିଁ ? ଅନ୍ୟ କୋ ମର୍ଦ୍ଦ ଆଗରେ ଏହା କହିବୁ ନାହିଁ —ମାଇପି ଆଗରେ ଏ କଥା ଶୋଭା ପାଇବ !

ଚନ୍ଦ୍ରକେତୁ କ୍ରୋଧରେ ଅନ୍ଧ ହୋଇ ଶର ବରଷାଇଦେଲେ । କୁଶ 'ମୋହନାସ୍ତ୍ର' ବିନ୍ଧି ଦେଲେ । ପାଞ୍ଚଭାଇଙ୍କର ଯେଉଁ ଦଶା ଚନ୍ଦ୍ରକେତୁଙ୍କର ବି ସେହିପରି ହେଲା । ତାଙ୍କୁ ପଡ଼ି ଯିବାର ଦେଖି ରାମ ବାଳକ ପରି କାନ୍ଦି ଉଠିଲେ । ଏହା ଦେଖି ଲବ କୁଶ ହସି ହସି ଗଡ଼ିଗଲେ । କୁଶ କହିଲେ—'ତୁମେ ପରା ରାମ—କ୍ଷତ୍ରିୟସନ୍ତାନ ? ରଥରେ ବସି କାନ୍ଦୁଚ ! ଯୁଦ୍ଧଭୂମିରେ କ୍ଷତ୍ରିୟ ହସେ, କାନ୍ଦେ ନାହିଁ—ଆନନ୍ଦରେ ନାଚେ, ଦୁଃଖରେ ଭାସେ ନାହିଁ । ତୁମ ଭଳି ଭୟାଳୁ ବୀର ହାତରେ ଧନୁଶର ସୁନ୍ଦର ଦେଖାଯାଏ ନାହିଁ । ସମସ୍ତେ ତ ମଲେଣି—ଘରକୁ ପଳାଅ ।'

ରାମ:—ମୋ ପୁଅ ଛଡ଼ା ତିନି ଭୁବନରେ ମୋତେ କେହି ଜିଣି ପାରିବ ନାହିଁ । ତୁମେମାନେ ମୋ ପୁଅ ପରି ହସୁଚ । କହ, ତୁମେହିଁ ମୋ' ପୁଅ ବୋଲି ଜାଣିଲେ ମୋ ମନ ଥୟ ହେବ ।

ଲବ:—ଏକଲା ହୋଇ ଯିବାରୁ ବୋଧହୁଏ ଭୟରେ ଏହା କହୁଚ ।

ଆମେ ଦୁହେଁ ଋଷିକୁମାର । ଋଷି-ଶିଶୁଙ୍କ ହାତରେ କ୍ଷତ୍ରିୟ ବୀରର
ଆଜ ନିଶ୍ଚୟ ଜୀବନ ଯିବ, ଜାଣି ରଖ ।

ରାମଙ୍କର ଏହା ନିତାନ୍ତ ଅସହ୍ୟ ହୋଇ ଉଠିଲା । ସେ ଧନୁ ଉଠାଇ ଶର ବନ୍ଧିଦେଲେ । ମାତ୍ର ଆଶ୍ଚର୍ଯ୍ୟର କଥା, ବାଣଟି ଲବକୁଶଙ୍କ ମୁଖରେ ଚୁମ୍ବ ଦେଇ ଫେରିଲା । ଲବକୁଶଙ୍କର ଶର ସବୁ ରାମଙ୍କ ବାମ ପାଦ ଛୁଇଁ ବାହୁଡ଼ିଲା । ପରେ ରାମ ମହା କ୍ରୋଧରେ ଶର ଛାଡ଼ିବାକୁ ଲାଗିଲେ । ତାଙ୍କର ବାଣ ସବୁ ଚାରିଆଡ଼େ ଖେଳିଗଲା, ପ୍ରଳୟ ଅଗ୍ନି ମାଡ଼ିଗଲା, ଅନ୍ଧକାର ଘୋଟିଗଲା । ଲବ କୁଶ କିଛି କାଳ ଛାନିଆଁ ହୋଇ ରହିଲେ । ଏ ଭୟ କିନ୍ତୁ ଅଧିକ ସମୟ ରହିଲା ନାହିଁ । ରାମଙ୍କର ପୁଅ ଅଧୈର୍ଯ୍ୟ ହେବେ କାହିଁକି ? ଦମ୍ଭ ଧରି ସେମାନେ ହୁଙ୍କାର କରି ପୁଣି ଯୁଦ୍ଧକୁ ଡେଇଁ ପଡ଼ିଲେ । ଶର ମାରି ରାମଙ୍କର ବାଣ ସବୁ କାଟି ପକାଇଲେ । ରାମଙ୍କ ବାଣର ଅଗ୍ନି ସେଇକ୍ଷଣି ନିଭିଗଲା—ଚାରି ଦିଗର ଅନ୍ଧାର କେଉଁ ଆଡ଼େ ଘୁଞ୍ଚିଗଲା ! ବାପ ପୁଅଙ୍କର ଏ ଭୟଙ୍କର, ଚମତ୍କାର ଯୁଦ୍ଧ ସେତେବେଳେ ଦେଖୁଛି କିଏ ! ରାମ ମନେ ମନେ ଶିଶୁମାନଙ୍କ ଯୁଦ୍ଧକୁ ଧନ୍ୟ ଧନ୍ୟ କରୁଥାନ୍ତି । ଠାଣୁଆ ବୀରକୁ ପାଇ ଲବକୁଶଙ୍କର ବୁକୁ ଗର୍ବରେ, ଆନନ୍ଦରେ ଫୁଲି ଉଠୁଥାଏ । ଦୁଇ ଭାଇ ବାଣ ମାରି ମାରି କ୍ଳାନ୍ତ ହୋଇଗଲେ । ଜୀବନ ଆଶା ଛାଡ଼ି ଦୁହେଁ ପ୍ରବଳ ବେଗରେ ଯୁଦ୍ଧ ଚଳାଇଲେ । ଦେଖୁଁ ଦେଖୁଁ ସେମାନଙ୍କ ଘନଘନ ବାଣ ପ୍ରହାରରେ ରାମ ରଥରୁ ଅଚେତନ ହୋଇ ଖସି ପଡ଼ିଲେ ।

ଦୁଇ ଭାଇଙ୍କ ଆନନ୍ଦର ଅନ୍ତ ସୀମା ନାହିଁ ! ସେମାନେ ରାମଙ୍କ ପାଖକୁ ଧାଇଁଗଲେ । ରାମଙ୍କ ଦେହରେ ଯେତେ ଅଲଙ୍କାର ଥିଲା, କୁଶ ସେ ସବୁ ବାହାର କରିଦେଲେ । ଲବଙ୍କ ଦେହରେ ଗହଣା ସବୁ ଖଞ୍ଜି ଦେଇ କହିଲେ—'ଭାଇ, ଆଜଠୁ ତୁମେ ଅଯୋଧ୍ୟାର ରାଜା ।' ଲବ

ହସି ଉଠିଲେ । କୁଶ ରାମଙ୍କ ହାତରୁ ଧନୁଷ କାଢ଼ି ଆଣିଲେ । ପରେ ମରି ପଡ଼ିଥିବା ସୈନ୍ୟ ଦେଖି ବୁଲିଲେ । ଦେଖିଲେ, ହନୁ ଜାମ୍ବବ ଦୁହେଁ ମରି ନାହାନ୍ତି । ଲବ କୁଶ ସେ ଦୁହିଁଙ୍କି ଦଉଡ଼ିରେ ବାନ୍ଧି ହସି ହସି ଆଶ୍ରମକୁ ବାହୁଡ଼ିଲେ ।



## ପୁନର୍ଜନ୍ମ

ଲବ କୁଶ ହନୁମାନ ଓ ଜାମ୍ବବଙ୍କୁ ବାନ୍ଧି ଆଣି ଋଷି ଆଶ୍ରମରେ ପ୍ରବେଶ କଲେ । ସୀତା ଏହା ଦେଖି ଏକାବେଳକେ ଆଶ୍ଚର୍ଯ୍ୟ ହୋଇଗଲେ । ସେ ହନୁ ଓ ଜାମ୍ବବଙ୍କ ଗଳାର ଫାଶ ଫିଟାଇ ଦେଲେ । ଦୁହେଁ ତାଙ୍କ ପାଦରେ ପଡ଼ି କାନ୍ଦିବାକୁ ଲାଗିଲେ । ସୀତାଦେବୀ ସେମାନଙ୍କ ହାତ ଧରି ଉଠାଇବା ପରେ ହନୁମାନ କାତର ସ୍ୱରରେ ଜଣାଇଲେ,—'ମା, ସର୍ବନାଶ ହୋଇ ଅଛି—ଅଯୋଧ୍ୟା, କିଷ୍କିନ୍ଧ୍ୟା ଆଉ ଲଙ୍କାର ସବୁ ସରିଛି । ଏ ଦୁଇଟି ଶିଶୁ ରାମଙ୍କୁ, ତାଙ୍କ ଭାଇ, ପୁତୁରାମାନଙ୍କୁ, ସୁଗ୍ରୀବ, ବିଭୀଷଣଙ୍କୁ ଯୁଦ୍ଧରେ ମାରି ପକାଇଛନ୍ତି ।'

ସୀତା ମୂର୍ଚ୍ଛିତ ହୋଇ ପଡ଼ିଲେ । ଲବ କୁଶ ପାଣି ସିଞ୍ଚି ତାଙ୍କୁ ସଚେତ କରାଇଲେ । ପରେ ସମସ୍ତେ ମିଶି ଯୁଦ୍ଧଭୂମିକି ଗଲେ । ଏତେ ବଡ଼ ରଥୀମାନଙ୍କୁ ଦୁଇ ଶିଶୁଙ୍କ ଶରରେ ମରି ପଡ଼ିଥିବାର ଦେଖି ସୀତାଙ୍କ ବିସ୍ମୟର ସୀମା ରହିଲା ନାହିଁ । ସେ ରାମଙ୍କ ପାଖରେ ବିଳାପ କରି ବସିଲେ । କାରଣ ପଚାରିବାରୁ ସୀତା ଦୁଇ ପୁଅଙ୍କୁ କହିଲେ ଯେ, ସେମାନେ ନ ଜାଣି ନିଜ ପିତା, ଖୁଡ଼ୀମା ଆଉ ଭାଇମାନଙ୍କୁ ମାରିଛନ୍ତି । ଏହା ଜାଣି ପାରି ଦୁହେଁ କାନ୍ଦି ଉଠିଲେ । ନିଆଁ ଜାଳିବାକୁ ସୀତା ପୁଅ-ମାନଙ୍କୁ କହିଲେ । ନିଆଁରେ ତେଇଁ ପ୍ରାଣ ଦେବାକୁ ବାହାରିଲେ ।

ଦୁଃଖଶୋକରେ ଲବ କୁଶ ମଧ୍ୟ ଅଗ୍ନିରେ ପଶିବାକୁ ପ୍ରସ୍ତୁତ ହେଲେ। ହନୁ କାଠ ସଂଗ୍ରହ କରି ଆଣିଲେ। ଘିନା ଗୋଟା ଅଗ୍ନିକୁଣ୍ଡ ଧୂ ଧୂ ଜଳି ଉଠିଲା। ସୀତା, ଦୁଇ ପୁଅ ନିଆଁରେ ଝାସ ଦେବାକୁ ବସିଛନ୍ତି, ଠିକ୍ ଏ ସମୟରେ ବାଲ୍ମୀକି ଯୋଗବଳରେ ଏହା ଜାଣି ପାରି ଚିତ୍ରକୂଟରୁ ସେଠାକୁ ଫେରି ଆସିଲେ।

ସୀତା କାନ୍ଦି କାନ୍ଦି ଋଷିଙ୍କ ପାଦରେ ପଡ଼ି କହିଲେ—'ପିତା, ଲବକୁଶ ସୂର୍ଯ୍ୟବଂଶ ନିପାତ କରିଛନ୍ତି। ମୁଁ ନିଆଁରେ ପଶି ଜୀବନ ଛାଡ଼ୁଛି। ଦୁଇ ପିଲାଙ୍କୁ ଅଯୋଧ୍ୟାକୁ ପଠାଇ ଦିଅନ୍ତୁ। ଏମାନଙ୍କ ମୁଖ ଦେଖି ଶାଶୁ ଓ ଭଉଣୀମାନେ ପୁତ୍ରଶୋକ ଭୁଲି ପାରନ୍ତୁ।'

ବାଲ୍ମୀକି ଅଳ୍ପ ହସି ସୀତାଙ୍କୁ ଆଶ୍ୱସ୍ତ କଲେ। ହନୁମାନ ଓ ଜାମ୍ବବଙ୍କୁ କହିଲେ—'ଏଠାରେ ମରି ପଡ଼ିଥିବା ସବୁ ଲୋକ ଏକ୍ଷଣି ପୁନର୍ଜନ୍ମ ପାଇ ଉଠିବେ। ଲବ କୁଶ ରାମଙ୍କର ପୁଅ ବୋଲି ତୁମେମାନେ ଏକ୍ଷଣି ତାହାକୁ କହିବ ନାହିଁ। ପରେ ଅଶ୍ୱମେଧଯଜ୍ଞରେ ପିତା ପୁତ୍ରଙ୍କର ଭେଟ ହେବ।' ହନୁ ଓ ଜାମ୍ବବ ମୁନିଙ୍କ କଥା ରଖିଲେ। ବାଲ୍ମୀକି ହାତରେ ପାଣି ଧରି ମୃତସଞ୍ଜୀବନୀ ମନ୍ତ୍ର ବୋଲାଇଲେ। ପରେ ସେଇ ପାଣି ଶିଷ୍ୟମାନଙ୍କୁ ଦେଇ, ସମସ୍ତଙ୍କ ଉପରେ ଛିଞ୍ଚିବାକୁ ଆଦେଶ କଲେ। ଶିଷ୍ୟମାନେ ସେଇକ୍ଷଣି ଗୁରୁଙ୍କ ଆଦେଶ ପାଳନ କଲେ। ଆଶ୍ଚର୍ଯ୍ୟର କଥା, ସେହି ମୁହୂର୍ତ୍ତରେ ସମସ୍ତେ ପୁନର୍ଜନ୍ମ ପାଇ ଉଠିଲେ। ସୀତାଙ୍କର ପୋଡ଼ା ପ୍ରାଣ ଶୀତଳ ହୋଇ ଗଲା। ସୀତା ମହା ଆନନ୍ଦରେ ଦୁଇ ପୁଅଙ୍କୁ ସଙ୍ଗେ ଧରି ଅତି ଶୀଘ୍ର ଆଶ୍ରମକୁ ବାହୁଡ଼ିଗଲେ। ରାମ ଲକ୍ଷ୍ମଣ ପ୍ରଭୃତି ଋଷିଙ୍କୁ ଭକ୍ତି ସହ ପ୍ରଣାମ କଲେ। ରାମ ପ୍ରଶ୍ନ କଲେ—'ମୁନିବର ଏ ଦୁଇଟି ପିଲା କାହାର ପୁଅ?'

ବାଲ୍ମୀକି:—ପ୍ରଭୋ, ଏମାନଙ୍କର ପରିଚୟ ବର୍ତ୍ତମାନ ଦେବି ନାହିଁ । ଆପଣ ଅଶ୍ୱ ଧରି ଚଞ୍ଚଳ ଫେରନ୍ତୁ, ଯାଗ ସାରନ୍ତୁ । ପଛକୁ ପଛେ ପିଲାମାନଙ୍କୁ ଧରି ଯାଗକୁ ଆସୁଛି—ସେଇଠି ଦୁହିଁଙ୍କର ପରିଚୟ ଦେବି ।

ରାମଚନ୍ଦ୍ର ଋଷିଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରି ଭାଇ, ପୁରୁଷ, ସୈନ୍ୟ, ସାମନ୍ତ ସମସ୍ତଙ୍କ ସଙ୍ଗେ ଘୋଡ଼ାକୁ ନେଇ ନୈମିଷାରଣ୍ୟକୁ ବାହୁଡ଼ିଲେ ।

---

## ବାପା ପୁଅଙ୍କ ଭେଟ

ତହିଁ ଆର ଦିନ ସକାଳେ ବାଲ୍ମୀକି ଲବ କୁଶଙ୍କୁ ସଙ୍ଗେ ଧରି ଅଯୋଧ୍ୟା ଆଡ଼କୁ ଗଲେ । ଲବ କୁଶଙ୍କ ହାତରେ ରାମାୟଣ ପୋଥି ଥାଏ । ବାଟରେ ସେ ଦି ପିଲାଙ୍କୁ କହିଲେ—'ମୁଁ ତୁମମାନଙ୍କୁ ଧନୁର୍ବିଦ୍ୟା, ସଙ୍ଗୀତ ଶାସ୍ତ୍ର ଶିଖାଇଛି । ତୁମେ ଦୁହେଁ ମଧୁର ସ୍ୱରରେ ସମସ୍ତଙ୍କୁ ମୋହିତ କରୁଛ— ମୁଁ ଭାରି ସନ୍ତୁଷ୍ଟ । ରାମଙ୍କ ଯଜ୍ଞରେ ତୁମେମାନେ ରାମାୟଣ ଗାଇ ସମସ୍ତଙ୍କୁ ମୁଗ୍ଧ ଚକିତ କଲେ ମୁଁ ଆହୁରି ସନ୍ତୁଷ୍ଟ ହେବି । ଯାଗଶାଳାରେ ରାମଚନ୍ଦ୍ର ରାମାୟଣ ଗାଇବାକୁ କହିଲେ, ତୁମେମାନେ ନିର୍ଭୟରେ ଗାଇବ— ପଦେ ହେଲେ ଛାଡ଼ିବ ନାହିଁ । ଧନ ରତ୍ନ ଯାଚିଲେ ଗ୍ରହଣ କରିବ ନାହିଁ । କହିବ, ତୁମେ ଦୁହେଁ ଋଷି ପିଲା—ଧନ ରତ୍ନ ଦରକାର ନାହିଁ । ତୁମେ-ମାନେ କା'ପୁଅ ବୋଲି ପଚାରିଲେ କହିବ ନାହିଁ ।'

ତିନି ଜଣ ଯାଗସ୍ଥାନରେ ଯାଇ ଉପସ୍ଥିତ ହେଲେ । ରାମଚନ୍ଦ୍ର ଋଷିଙ୍କୁ ଖୁବ୍ ଆଦର ସମ୍ମାନ କରି ବସା ଦେଲେ । ପର ଦିନ ସକାଳେ ଯାଗ ସ୍ଥଳରେ ରାମ ଭାଇ, ମନ୍ତ୍ରୀ ଆଉ ପୁରବାସୀମାନଙ୍କ ସଙ୍ଗେ ବସିଛନ୍ତି । ଆମନ୍ତ୍ରିତ ରାଜା, ଋଷି, ବ୍ରାହ୍ମଣମାନେ ବସିଛନ୍ତି, ଅଯୋଧ୍ୟାର ବଡ଼ ବଡ଼

ଲୋକେ ରୁଣ୍ଡ ହୋଇଛନ୍ତି, ଏତିକବେଳେ ରାମ ବାଲ୍ମୀକିଙ୍କି ଡକାଇଲେ । ମୁନି ଲବକୁଶଙ୍କୁ ସଙ୍ଗେ ନେଇ ସେଠାରେ ହାଜର ହେଲେ । ଦୁଇ ବାଳକ ରାମାୟଣ ପୋଥି କାଖରେ ଯାକିଛନ୍ତି, ହାତରେ ବୀଣା ଧରିଛନ୍ତି । ସେମାନଙ୍କ ଦେହରୁ ଦିବ୍ୟ କାନ୍ତି ଫୁଟି ବାହାରୁଛି । ଦେହରେ ପବିତ୍ର ସରଳ ମୁନିକୁମାର ବେଶ—ମୁଖରୁ ଅପୂର୍ବ କ୍ଷତ୍ରିୟ-ତେଜ ଝଟକି ଉଠୁଛି । ମୁନିଆଶ୍ରମର ଯୁଦ୍ଧ କଥା ମନେ ପକାଇ ସମସ୍ତେ ଲବ କୁଶଙ୍କର ବିଚିତ୍ର ଲଢ଼େଇ, ସାହସକୁ ମନେ ମନେ ପ୍ରଶଂସା କରି ଅବାକ୍ ହୋଇ ରହିଲେ । ତିନିହେଁ ଉଚିତ ଆସନରେ ବସିଲେ ।

ସଭାର ଲୋକେ ଲବ କୁଶଙ୍କ ତାଳୁରୁ ତଳିପା ଯାଏଁ ନିରୀକ୍ଷଣ କରି ବସିଥାନ୍ତି । ସମସ୍ତଙ୍କ ମନରେ ଆନନ୍ଦ, ସନ୍ତୋଷ । ପିଲା ଯୋଡ଼ିକ ଗୋଟିଏ ଗୃଞ୍ଜଳରେ ଗଢ଼ା, ଦେଖିବାକୁ ବଡ଼ ଉଜ୍ଜ୍ୱଳ ଡାହୁଲ—ଠିକ୍ ଯେପରି ଯୋଡ଼ିଏ ପିଲା ରାମ । ଦୁହେଁ ରାମଙ୍କର ପୁଅ ବୋଲି ମନେ ମନେ ଏକ ରକମ ଠିକ୍ କରି ନେଲେଣି । ମାତ୍ର ସନ୍ଦେହରେ ପଡ଼ି କେହି କାହାକୁ ମନ କଥା ଫିଟାଇ କହୁ ନାହାନ୍ତି । ରାମଙ୍କର ବି ସେଇ ସନ୍ଦେହ । ସେ ପିଲାମାନଙ୍କୁ ଏକ ଦୃଷ୍ଟିରେ ଅନାଇଁ ରହିଥାନ୍ତି । ଦୁହିଁଙ୍କର ପ୍ରକୃତ ପରିଚୟ ପାଇବାକୁ ତାଙ୍କ ମନ ପ୍ରାଣ ବ୍ୟାକୁଳ ହେଉ ଥାଏ । ଯାହାହେଉ, ଲବକୁଶଙ୍କୁ ଦେଖିବା କ୍ଷଣରୁ ରାମଙ୍କ ହୃଦୟରୁ ସରଳ ସରସ ସନ୍ତାନ-ସ୍ନେହ ମଧୁର ସୁନ୍ଦର ଧାରାରେ ଉଚ୍ଛୁଳି ପଡ଼ୁ ଥାଏ ।

ଲବ କୁଶ କ ପୋଥି ଧରି ବସିଛନ୍ତି ରାମ ପଚାରିବାରୁ, କୁଶ ମଧୁର ସ୍ୱରରେ କହିଲେ—'ଏ ରାମାୟଣ ଚରିତ । ଆମ ଗୁରୁ ଲେଖିଛନ୍ତି ।'
ଲବ:—ଋଷି ଆମ ଦୁହିଁଙ୍କୁ ରାମାୟଣଗାନ ଶିଖାଇଛନ୍ତି ।

ରାମାୟଣ ଗାଇବା ସକାଶେ ରାମଚନ୍ଦ୍ର ଲବ କୁଶଙ୍କୁ କହିଲେ । ଦି ଭାଇ ପ୍ରଥମରେ ବାଲ୍ମୀକିଙ୍କ ପାଦବନ୍ଦନା, ଭଗବାନ ସ୍ମରଣ କଲେ । ପରେ

ସୁକୋମଳ ହାତରେ ବୀଣା ବଜାଇ ସୁମଧୁର କଣ୍ଠରେ ଗାଇବାକୁ ଆରମ୍ଭ କଲେ । ସଭାର ଲୋକେ ତାହା ଏକ ମନ ଏକ ଧ୍ୟାନରେ ଶୁଣିବାକୁ ଲାଗିଲେ । ସମସ୍ତେ ଧୀର ସ୍ଥିର ହୋଇ ବସିଛନ୍ତି—ଏଡ଼େ ବଡ଼ ସଭାରେ ଟିକିଏ ହେଲେ ଶବ୍ଦ ଶୁଭିବାକୁ ନାହିଁ । ଏତେ ଲୋକ ରୁଣ୍ଡ ହୋଇଛନ୍ତି ଯେ, ତଳେ ସୋରିଷଟାଏ ପକାଇବାକୁ ବି ସ୍ଥାନ ନାହିଁ । ସମସ୍ତଙ୍କ ଦୃଷ୍ଟି ଲବକୁଶଙ୍କ ମୁଖ ଉପରେ—ସମସ୍ତଙ୍କ କାନ ପିଲାମାନଙ୍କ ଗାନରେ । ପିଲାମାନଙ୍କ ନାନା ରାଗ ରାଗିଣୀରେ ଗାଇବାର ଦେଖି ସମସ୍ତେ ଏକାବେଳକେ ବିସ୍ମିତ !

ବହୁ ସମୟ ପରେ, ବାଲ୍ମୀକିଙ୍କ ଆଦେଶରେ ଲବକୁଶ ଗାନ ବନ୍ଦ କଲେ । ପର ଦିନ ରାମାୟଣର ବାକି ଭାଗ ଗୀତ ହେବାର ସ୍ଥିରହେଲା । ଗାନ ବନ୍ଦ ହେବା କ୍ଷଣି ରାମଚନ୍ଦ୍ର ଆସନରୁ ଉଠି ଲବକୁଶଙ୍କ ପାଖକୁ ଗଲେ । ସେମାନଙ୍କୁ ପ୍ରେମରେ କୁଣ୍ଢେଇ ପକାଇଲେ । ପରେ ଦୁହିଁଙ୍କୁ ପାଖରେ ବସାଇ ବସିଲେ । ବାଲ୍ମୀକି ଉଠି ସମସ୍ତଙ୍କୁ ଲବକୁଶଙ୍କର ପ୍ରକୃତ ପରିଚୟ ଦେଲେ—ସୀତାବନବାସ ଠାରୁ ଯୁଦ୍ଧ ଯାଏ ଯାହା ଯାହା ଘଟିଥିଲା, ସବୁ ବୁଝାଇ କହିଲେ । ସଭାର ଲୋକେ ମହା ଆନନ୍ଦରେ ଅଥୟ ହୋଇ ଉଠିଲେ । 'ଜୟ ଜୟ' ଧ୍ୱନିରେ ଯଜ୍ଞସ୍ଥଳ ପୂରିଗଲା—'ରାମଙ୍କର ଜୟ !' 'ସୀତାଠାକୁରାଣୀଙ୍କର ଜୟ !!' 'ଲବକୁଶଙ୍କର ଜୟ !!!'

ରାମଚନ୍ଦ୍ର ପିଲାମାନଙ୍କୁ କୋଳରେ ଧରି ଘନ ଘନ ମସ୍ତକରେ, ମୁଖରେ ଚୁମ୍ବନ କରିବାକୁ ଲାଗିଲେ । ଅତି ଆନନ୍ଦରେ ତାଙ୍କ ଆଖିରୁ ଲୁହ ଗଡ଼ୁଥାଏ । ଭରତ, ଲକ୍ଷ୍ମଣ, ଶତ୍ରୁଘ୍ନ, ଜନକ, ବିଭୀଷଣ, ସୁଗ୍ରୀବ, ହନୁମାନ ପ୍ରଭୃତି ଜଣକ ପରେ ଜଣେ ଲବ କୁଶଙ୍କୁ କୁଣ୍ଢେଇ କାଖେଇ ଚୁମ୍ବ ଦେବାକୁ ଲାଗିଲେ । ରାମଙ୍କର ଛ ପୁତୁରା ଧାଇଁ ଆସି ଅପୂର୍ବ ସନ୍ତୋଷରେ

ଲବ କୁଶଙ୍କ ଆଲିଙ୍ଗନ କରି ପକାଇଲେ । ଘଡ଼ିଏ ଯାଏ ଲବ କୁଶଙ୍କର ପାଦ ଆଉ ତଳେ ପଡ଼ୁନାହିଁ—କାଖରୁ କାଖକୁ, କୋଳରୁ କୋଳକୁ ହେଉଥାନ୍ତି । ପରେ ଭରତ ଦି ପିଲାଙ୍କୁ ଧରି ମା'ମାନଙ୍କ ପାଖକୁ ଧାଇଁ ଗଲେ । ଲବ କୁଶଙ୍କୁ ଚିହ୍ନି ସେମାନଙ୍କ ଖୁଡ଼ି ଓ ଗୋସେଇଁମାମାନଙ୍କର, ଅନ୍ୟାନ୍ୟ ସ୍ତ୍ରୀଙ୍କର ଯେଉଁ ଆନନ୍ଦ ହେଲା, ତାହା ଏଠି ଆଉ ବର୍ଣ୍ଣନା କରିବା କଠିନ । ସମସ୍ତେ ପିଲା ଦୁହିଁଙ୍କି ପ୍ରେମରେ ଯାକି ଭିଡ଼ି ଧରି ଆନନ୍ଦର ଲୋତକ ଧାରରେ ଦୁହିଁଙ୍କି ଏକାବେଳକେ ତିନ୍ତାଇ ଦେଲେ । ଅଯୋଧ୍ୟାରେ ଲବ କୁଶ ଜନ୍ମ ହୋଇଥିଲେ ଯେପରି ଆନନ୍ଦ ଉତ୍ସବ ହୋଇ ଥାନ୍ତା, ଆଜି ତାହାର ସହସ୍ର ଗୁଣ ଆନନ୍ଦ ଉତ୍ସବ ମାଡ଼ି ଉଠିଲା । ଏହି ଆନନ୍ଦରେ ପ୍ରତ୍ୟେକ ପୁରୁଷ ସ୍ତ୍ରୀ ବାଳକ ସକାଶେ ନିଜ ନିଜକୁ ସଂପୂର୍ଣ୍ଣ ରୂପେ ପାସୋରିଗଲେ । ରାଣୀମାନେ ଲବ କୁଶଙ୍କୁ ରାଜକୁମାର-ବେଶ ପିନ୍ଧାଇଦେଲେ ।



## ସୀତା ପାତାଳରେ ପଶିଲେ

ଲବକୁଶଙ୍କୁ ଦେଖି ଅଯୋଧ୍ୟାର ପ୍ରଜାମାନେ ସୀତାଙ୍କୁ ବେଶୀ ମନେ ପକାଇ ଦୁଃଖ କଲେ । ସୀତାଙ୍କ ଶାଶୁ ଓ ଭଉଣୀମାନେ ଅହୋରାତ୍ରି କାନ୍ଦି ବସିଲେ । ଜନକ ଆଉ ବଶିଷ୍ଠ ସୀତାଙ୍କୁ ଡାକି ଆଣିବା ନିମନ୍ତେ ରାମଚନ୍ଦ୍ରଙ୍କୁ ଅନୁରୋଧ କଲେ—ତାଙ୍କର ହାତ ଧରି ଅନେକ ବୁଝାଇ କହିଲେ । ନିମନ୍ତ୍ରିତ ରାଜା, ବ୍ରାହ୍ମଣ ଓ ମୁନିମାନେ ମଧ୍ୟ ରାମଙ୍କୁ ସେହି କଥା କହିଲେ । ଶେଷରେ ରାମଚନ୍ଦ୍ର ସୀତାଙ୍କୁ ଡାକି ଆଣିବାକୁ ରାଜି ହେଲେ । ତାଙ୍କ ଆଦେଶରେ ଭରତ ଓ ଲକ୍ଷ୍ମଣ ବାଲ୍ମୀକିଙ୍କ ସଙ୍ଗେ ଯାଇ ସୀତାଙ୍କୁ ଅଯୋଧ୍ୟାକୁ ଡାକି ଆଣିଲେ ।

ଯାଗ ସ୍ଥଳରେ ସମସ୍ତେ ବସି ଅଛନ୍ତି, ଏ ସମୟରେ ବାଲ୍ମୀକି ସେଠାରେ ପ୍ରବେଶ କଲେ । ସୀତା ଲଜ୍ଜା, ଅଭିମାନରେ ମୁହଁ ତଳକୁ କରି ଧୀରେ ଧୀରେ ମୁନିଙ୍କ ପଛେ ପଛେ ଲାଗିଥାନ୍ତି । ତାଙ୍କୁ ଦେଖି ସମସ୍ତେ ଆନନ୍ଦ, ଆଶାସନାରେ ବିଭୋର ହୋଇଗଲେ । ସଭାରେ ମହା କୋଳାହଳଧ୍ୱନି ଉଠିଲା । ସମସ୍ତେ ମିଳି ସୀତା ଓ ରାମଚନ୍ଦ୍ରଙ୍କର ଗୁଣ କୀର୍ତ୍ତନ କଲେ । ସୀତା ରାମଙ୍କ ଚରଣତଳେ ପଡ଼ି ପ୍ରଣାମ କଲେ । ପରେ ଉଠି ଆଖିରୁ ଲୁହ ଗଡ଼ାଇ ଠିଆ ହେଲେ । କିଛିକ୍ଷଣ ଯାଏ ରାମଙ୍କର ବାକ୍ୟସ୍ଫୂର୍ତ୍ତି ହେଲା ନାହିଁ—ଚକ୍ଷୁରୁ କେବଳ ଲୋତକ ଝରୁଥାଏ । ଏ ଦୃଶ୍ୟ ଦେଖି ସମସ୍ତେ ନ କାନ୍ଦି ରହି ପାରଲେ ନାହିଁ । ବାଲ୍ମୀକି ରାମଙ୍କୁ କହିଲେ—'ବହୁ ଦିନ ପରେ ଆଜି ମଙ୍ଗଳ ମିଳନ ହୋଇ ଅଛି । ସତୀ ଶିରୋମଣି ସୀତାଙ୍କୁ ଗ୍ରହଣ କରନ୍ତୁ ।'

ରାମ:—ମୁନିବର, ମୁଁ ଜାଣେ, ସୀତାଙ୍କୁ ପାପ ଛୁଇଁ ନାହିଁ । ତେବେ ଲୋକଙ୍କ ଅପବାଦରେ ମୁଁ ତାଙ୍କୁ କଷ୍ଟ ଦେଇଛି । ଲୋକମାନଙ୍କ ଅଧିକ ସନ୍ତୋଷ ପାଇଁ ମୁଁ ଆଉ ଗୋଟିଏ କଥା କହୁଛି । ସୀତା ଶେଷ ପରୀକ୍ଷା ଦିଅନ୍ତୁ—ନିଜ ନିଷ୍କଳଙ୍କ ଚରିତ୍ରର, ପବିତ୍ର ଜୀବନର ପୁଣି ପରିଚୟ ଦିଅନ୍ତୁ । ଏଠାରେ କେବଳ ଅଯୋଧ୍ୟାର ନୁହେଁ, ନାନା ଦେଶର ରାଜା, ପ୍ରଜା, ପଣ୍ଡିତ, ବ୍ରାହ୍ମଣ ଓ ଋଷିମାନେ ଅଛନ୍ତି । ଶେଷ ପରୀକ୍ଷାରେ ସମସ୍ତେ ତୃପ୍ତ ହେବେ ।

ସୀତା ବାଲ୍ମୀକିଙ୍କ ମୁଖକୁ ଅନାଇଲେ । ଅନାଇବାର ଉଦ୍ଦେଶ୍ୟ ପରାମର୍ଶ ଲୋଡ଼ିବା । ଋଷି ହସହସ ମୁଖରେ କହିଲେ—'ମା, ଚିନ୍ତା କର ନାହିଁ । ଆନନ୍ଦରେ ଶେଷ ପରୀକ୍ଷା ଦିଅ । ସମସ୍ତେ ତୁମର ବିଶୁଦ୍ଧ ଚରିତ୍ରର ଆଉ ଥରେ ପରିଚୟ ପାଇ ଧନ୍ୟ ଧନ୍ୟ ହେଉନ୍ତୁ ।'



ସୀତାଙ୍କ ପାତାଳ ପ୍ରବେଶ···

[ଲବ କୁଶ ପୃଷ୍ଠା ୪୭]

ସୀତା ଶେଷ ପରୀକ୍ଷା ପାଇଁ ପ୍ରସ୍ତୁତ ହୋଇଗଲେ । ଏହା ଦେଖିବା ପାଇଁ ସେଠାକୁ ତାଙ୍କ ଶାଶୁ, ଭଉଣୀମାନେ, ଅନ୍ତଃପୁରର ଦାସୀମାନେ, ନଗରର ସକଳ ସ୍ତ୍ରୀ ପୁରୁଷ ସେଠାରେ ରୁଣ୍ଡ ହୋଇଗଲେ । ବ୍ରହ୍ମା ଦେବତାମାନଙ୍କୁ ସଙ୍ଗେ ନେଇ ସେଠାରେ ଉପସ୍ଥିତ ହେଲେ । ସମସ୍ତଙ୍କ ଦୃଷ୍ଟି ସୀତାଙ୍କ ଉପରେ । ସୀତା ଶାଶୁମାନଙ୍କୁ ଓଳକ ହେଲେ । ଶାଶୁ-ମାନେ ଆଉ ଭଉଣୀମାନେ ଲୋତକପୂର୍ଣ୍ଣ ଚକ୍ଷୁରେ ସୀତାଙ୍କୁ ଆଲିଙ୍ଗନ କରି ପକାଇଲେ । ସୀତା ଆଗେ ପୁତ୍ରମାନଙ୍କୁ, ପରେ ଲବକୁଶଙ୍କୁ କିଛିକ୍ଷଣ କୁଣ୍ଢେଇ ଧରି ସେମାନଙ୍କ ମସ୍ତକ ଚୁମ୍ବନ କଲେ । ଶେଷରେ ଶ୍ରୀରାମ, ଜନକ ଓ ବାଲ୍ମୀକିଙ୍କ ଚରଣରେ ଭକ୍ତି ସହ ପ୍ରଣାମ କରି, ହାତ ଯୋଡ଼ି, ତଳକୁ ଅନାଇଁ କହିଲେ—'ମା ବସୁମତି, ତୁମେ ମୋତେ ଗର୍ଭରେ ରଖିଥିଲ, ତୁମ ଗର୍ଭକୁ ଫେରିବାକୁ ମନ ବଳାଇଛି । ବୁଦ୍ଧି ହେବା ଦିନୁ, ମୁଁ ଶ୍ରୀରାମଙ୍କୁ ହୃଦୟରେ ସ୍ଥାନ ଦେଇ ଭକ୍ତି ସହିତ ତାଙ୍କର ପୂଜା ଧ୍ୟାନ କରି ଆସୁଛି । ରାମଚନ୍ଦ୍ରଙ୍କ ପାଦପଦ୍ମ ଭିନ୍ନ ମୁଁ ଆଉ କିଛି ଜାଣେ ନାହିଁ—ତାଙ୍କ ଭିନ୍ନ ଆଉ କାହାକୁ ଏକ କ୍ଷଣ ସ୍ୱପ୍ନରେ ଚିନ୍ତା କରି ନାହିଁ । ଦେହ, କାର୍ଯ୍ୟ, ବାକ୍ୟ ଓ ମନରେ ମୁଁ ଶ୍ରୀରାମଙ୍କରହିଁ ସେବା କରି ଆସିଛି । ମୁଁ ଏବେ ସମସ୍ତଙ୍କ ଆଗରେ ଯାହା କହୁଛି ତାହା ଯଦି ସତ୍ୟ ହୋଇଥାଏ, ତାହାହେଲେ ମା ବସୁନ୍ଧରେ ! ମୋତେ ପୁଣି ତୁମର କୋମଳ କୋଳକୁ ନେଇ ଯାଅ ।'

ଏହା କହିବାମାତ୍ରକେ କି ଆଶ୍ଚର୍ଯ୍ୟର ବିଷୟ ତାଙ୍କ ପାଖରେ ଭୂମିଟି ହଠାତ୍ ଫାଟିଗଲା । ସମସ୍ତେ ଚମକି ପଡ଼ିଲେ । ଗୋଟିଏ ସୁନ୍ଦର ସିଂହାସନ ଭୂଗର୍ଭରୁ ଉପରକୁ ଉଠିଲା । ସିଂହାସନଟି ନାନା ମଣିରତ୍ନରେ ଜକ୍ ଜକ୍ ହଉଛି । ନାନା ଅଳଙ୍କାରରେ ମଣ୍ଡିତ ହୋଇ ପୃଥିବୀ-ଦେବୀ ସେଥିରେ ବସିଛନ୍ତି । ଦେବୀ ହସହସ ମୁଖରେ ସୀତାଙ୍କର ହାତ ଧରି ନେଇ

କୋଳରେ ବସାଇଲେ । ଦେଖୁଁ ଦେଖୁଁ ସିଂହାସନଟି ତଳକୁ ଖସିଗଲା । ସୀତାଦେବୀ ଚିରଦିନ ପାଇଁ ଅଦୃଶ୍ୟ ହୋଇଗଲେ—ସବୁ ସରିଗଲା । ସଂସାରର ଶ୍ରୀ ଭୁଟିଗଲା ।

ସୀତା ପାତାଳରେ ପଶିବା ସଙ୍ଗେ ସଙ୍ଗେ ଆକାଶରୁ ପୁଷ୍ପ ବୃଷ୍ଟି ହେଲା । ଦେବତା, ଋଷି, ବ୍ରାହ୍ମଣ, ରାଜା, ସମସ୍ତେ ଧନ୍ୟ ଧନ୍ୟ କଲେ । ଏ ବିଚିତ୍ର ଘଟନା, ଅଦ୍ଭୁତ ଦୃଶ୍ୟରେ ସମସ୍ତେ ଆଶ୍ଚର୍ଯ୍ୟ ହୋଇ ରହିଲେ । କିଛି କାଳ କାହା ମୁଖରୁ ଅନ୍ୟ କଥା ବାହାରିଲା ନାହିଁ । ଶ୍ରୀରାମ ମୂର୍ଚ୍ଛିତ ହୋଇ ପଡ଼ିଲେ । କେତେକ ସମୟ ପରେ ଚେତନା ପାଇ କାତର ପ୍ରାଣରେ ରୋଦନ କରିବାକୁ ଲାଗିଲେ । ତାଙ୍କ ଭାଇ, ପୁତ୍ରମାନେ କାନ୍ଦିବାକୁ ଲାଗିଲେ । ସୀତାଙ୍କ ଶାଶୁ ଓ ଭଉଣୀମାନଙ୍କ ବିଳାପ-ଧ୍ୱନିରେ ଯଜ୍ଞଶାଳା କମ୍ପି ଉଠିଲା । ଦେବତା ଓ ଋଷିମାନଙ୍କ ଛଡ଼ା, ସେଠାରେ ସମସ୍ତଙ୍କ ମଧ୍ୟରୁ ଗୋଟିଏ କ୍ରନ୍ଦନରୋଳ ଉଠିଲା । କିଛି ସମୟ ପରେ ବ୍ରହ୍ମାଙ୍କ ପ୍ରବୋଧରେ ସମସ୍ତେ ଆଶ୍ୱସ୍ତ ହେଲେ । କିନ୍ତୁ ଶ୍ରୀରାମଙ୍କ ସୁଖ ସନ୍ତୋଷ ଚିରଦିନ ପାଇଁ ପୋଡ଼ି ଜଳିଗଲା ।



## ଅଭିଷେକ

ରାମଙ୍କୁ ଆଶ୍ୱାସନା ଦେଇ ବ୍ରହ୍ମା ଦେବତାଙ୍କ ସଙ୍ଗେ ଯଜ୍ଞଶାଳରୁ ଚାଲି ଗଲେ । ଯାଗର ବର୍ଷ ପୂରିଗଲା । ବଶିଷ୍ଠାଦି ଋଷିମାନେ ଶୁଭ ମୁହୂର୍ତ୍ତରେ ଯଥା ବିଧାନରେ ଘୋଡ଼ାଟିକୁ ଅଗ୍ନି କୁଣ୍ଡରେ ପକାଇଲେ । ଯାଗ ସରିଲା । ନିମନ୍ତ୍ରିତ ଋଷି, ବ୍ରାହ୍ମଣ, ରାଜାମାନେ ଆଉ ଆଉ ଲୋକେ ଶ୍ରୀରାମଙ୍କଠାରୁ ଉପଯୁକ୍ତ ସମ୍ମାନ ଓ ଉପହାର ପାଇ ବିଦାୟ ନେଲେ । ରାମଚନ୍ଦ୍ର ମା, ଭାଇ, ଭାଇବୋହୂ, ପୁଅ ପୁତୁରା ଦାସଦାସୀ ପ୍ରଭୃତିଙ୍କ ସଙ୍ଗେ ଅଯୋଧ୍ୟାକୁ ବାହୁଡ଼ିଲେ ।

ରାମ ଅତି ଦୁଃଖରେ ଦିନ କଟାଇବାକୁ ଲାଗିଲେ । ସୀତା-ନାମହିଁ ତାଙ୍କର ଜପମାଳା ହେଲା—ଅନ୍ୟ କୌଣସି ବିଷୟରେ ତାଙ୍କ ମନ ଆଉ ଲାଗିଲା ନାହିଁ । ଆହାର ନିଦ୍ରା ଭୁଲି ଗଲେ । ସର୍ବଦା ସୀତାଙ୍କର ଗୁଣ ଗୁଣି ଗୁଣି ଦୁର୍ବଳ ହୋଇ ପଡ଼ିଲେ ।

ସୀତା ଚାଲିଯିବା ଦିନୁଁ କୌଶଲ୍ୟା, କୈକେୟୀ ଓ ସୁମିତ୍ରାଙ୍କର ସୁଖ, ଆନନ୍ଦ ଓ ଶାନ୍ତି କେଉଁଆଡ଼େ ଚାଲିଗଲା । ସେମାନେ ଖୁବ୍ ବୁଢ଼ୀ ହୋଇ ଯାଇଥିଲେ । ନାତିମାନଙ୍କୁ ତ ଦେଖିଲେ— ଆଉ ଗୁଡ଼ାଏ ଦିନ ବଞ୍ଚି ରହି ଲାଭ କଣ ? ତିନି ଜଣ ଦେହ ତ୍ୟାଗ କରି ଦେବାକୁ ପ୍ରସ୍ତୁତ ହେଲେ । ଏ କଥା ବଶିଷ୍ଠଙ୍କୁ, ମନ୍ତ୍ରିମାନଙ୍କୁ ଓ ପୁଅମାନଙ୍କୁ ଜଣାଇଲେ । ସରଯୂତୀରରେ ଅଗ୍ନି ସ୍ଥାପିତ ହେଲା । ସେଠାରେ ଅଯୋଧ୍ୟାର ସମସ୍ତେ ଯାଇ ରୁଣ୍ଡ ହେଲେ । ବୁଢ଼ୀ ରାଣୀମାନେ ଅଗ୍ନି ପ୍ରଦକ୍ଷିଣ କରି, ଦଶରଥଙ୍କୁ ଧ୍ୟାନ କରି ଜୟଧ୍ୱନି, ହୁଳହୁଳି ଓ ବ୍ରାହ୍ମଣମାନଙ୍କ ମନ୍ତ୍ରପାଠଧ୍ୱନି ମଧ୍ୟରେ ଅଗ୍ନିରେ ପ୍ରବେଶ କଲେ—ଚିର ଦିନ ପାଇଁ ଚାଲିଗଲେ ।

ସୀତା ନ ଥିବାରୁ ରାମଙ୍କୁ ରାଜ୍ୟ ଆଉ ଜୀବନ ବିଷ ପରି ଲାଗିଲା । ସେ ଲବକୁଶଙ୍କୁ ରାଜ୍ୟଭାର ଦେବାକୁ ମନ ବଳାଇଲେ । ବଶିଷ୍ଠଙ୍କର ମତ ଲୋଡ଼ିଲେ । ବଶିଷ୍ଠ ତାଙ୍କ ପ୍ରସ୍ତାବରେ ରାଜି ହେଲେ ଏବଂ ଏ ବିଷୟରେ ପ୍ରଜାମାନଙ୍କର ଅଭିମତ ଲୋଡ଼ିବାକୁ ଉପଦେଶ ଦେଲେ । ଶ୍ରୀରାମ ପ୍ରଜାମାନଙ୍କୁ ଡକାଇ ଗୋଟିଏ ସଭା କଲେ । ଲବକୁଶଙ୍କ ଅଭିଷେକ ସମ୍ବନ୍ଧରେ ଲୋକଙ୍କର ମତ ପଚାରିଲେ । ଏ ପ୍ରସଙ୍ଗରେ ପ୍ରଜାମାନେ ଆନନ୍ଦରେ ସ୍ୱୀକୃତ ହେଲେ । ଶୁଭ ଦିବସରେ ଲବକୁଶଙ୍କର ଅଭିଷେକ ମହା ଆଡ଼ମ୍ବରରେ ଚାଲିଗଲା । ପ୍ରଜାମାନେ ସୁଖୀ ହେଲେ । କୁଶ କୋଶଳ ରାଜ୍ୟରେ ରାଜୁତି କରିବାକୁ ଲାଗିଲେ । ଲବ ହେଲେ

ଉତ୍ତର କୋଶଳର ରାଜା । ଧନ, ରତ୍ନ, ହାତୀ, ଘୋଡ଼ା, ରଥ, ସେନା ଇତ୍ୟାଦି ଦୁଇ ଭାଇଙ୍କ ମଧ୍ୟରେ ସମାନ ଭାଗରେ ବଣ୍ଟା ଗଲା । କୋଶଳର ରାଜଧାନୀ ହେଲା କୁଶାବତୀ । ଏ ନଗର ବିନ୍ଧ୍ୟପର୍ବତ ନିକଟରେ ଥିଲା ।

ସିନ୍ଧୁ ନଦ କୂଳରେ ଦୁଇ ଗୋଟି ଦେଶ ଥାଏ । ଗନ୍ଧର୍ବମାନେ ସେଠାର ରାଜା । ରାମଙ୍କ ଆଦେଶରେ ଭରତ ବହୁ ସୈନ୍ୟ ଧରି ସେ ଦୁଇ ଦେଶ ଜୟ କରିବାକୁ ଗଲେ । କେକୟ ଦେଶର ରାଜା ଯୁଧାଜିତ ଭରତଙ୍କର ମାମୁ । ଭରତ ମାମୁଙ୍କ ସୈନ୍ୟ ସାହାଯ୍ୟରେ ଗନ୍ଧର୍ବ ରାଜା-ମାନଙ୍କୁ ଯୁଦ୍ଧରେ ହରାଇ ସିନ୍ଧୁନଦ କୂଳର ଦୁଇ ଦେଶ ଅଧିକାର କରି ନେଲେ । ପରେ ଶ୍ରୀରାମଙ୍କ ଅନୁମତି ନେଇ ସେଇ ଦୁଇ ରାଜ୍ୟରେ ନିଜ ପୁଅ ଦୁହିଁଙ୍କି ରାଜା କରାଇଲେ । ବଡ଼ ପୁଅ ତକ୍ଷ ଯେଉଁ ଦେଶର ରାଜା ହେଲେ, ତାହାର ନାମ ରଖାଗଲା 'ତକ୍ଷଶିଳା' । ସାନ ପୁଅ ପୁଷ୍କଳଙ୍କ ରାଜ୍ୟର ନାମ ରହିଲା 'ପୁଷ୍କଳାବତୀ' । ତକ୍ଷଶିଳାର ଆଜି କାଲି ନାମ ହୋଇଅଛି 'ରାବେଲପିଣ୍ଡି' ।

ଲକ୍ଷ୍ମଣଙ୍କ ବଡ଼ ପୁଅ ଚନ୍ଦ୍ରକେତୁ ଚନ୍ଦ୍ରକାନ୍ତପୁର ନାମକ ରାଜ୍ୟର ରାଜଗାଦିରେ ବସିଲେ । ସେଇ ରାଜ୍ୟରେ ତାଙ୍କ ପାଇଁ 'ମଲ୍ଲଭୂମି' ବୋଲି ଗୋଟିଏ ନଗର ତିଆରି ହେଲା । ଚନ୍ଦ୍ରକେତୁଙ୍କ ଭାଇ ଅଙ୍ଗଦ 'କାରୁପଥ' ଦେଶର ରାଜା ହେଲେ । 'ଅଙ୍ଗଦୀପୁ' ନଗର ହେଲା ତାଙ୍କର ରାଜଧାନୀ । ଲକ୍ଷ୍ମଣ କେତେକ ବର୍ଷ ପୁଅମାନଙ୍କ ପାଖରେ ରହି ସେମାନଙ୍କୁ ରାଜନୀତି ଶିଖାଇଲେ ।

ଶତ୍ରୁଘ୍ନଙ୍କର ଦୁଇ ପୁଅ, ସୁବାହୁ ଓ ଶତ୍ରୁଘାତୀ, ମଥୁରା ଓ ବୈଦିଶ ରାଜ୍ୟରେ ରାଜା ହେଲେ ।

ଆଠ ଭାଇଙ୍କର ବିବାହ ଉତ୍ସବ ବଡ଼ ଜାକଜମକରେ କଟିଗଲା । ଆଠ ଜଣ ଆଠ ରାଜ୍ୟରେ ପରମ ସୁଖ ସନ୍ତୋଷରେ ପ୍ରଜା ପାଳନ କରିବାକୁ ଲାଗିଲେ । ପ୍ରଜାମାନେ ଢ଼େର ସୁଖ ଶାନ୍ତିରେ ଦିନ କଟାଇଲେ ।



## ଦେହତ୍ୟାଗ

ରାମଚନ୍ଦ୍ର ସାକ୍ଷାତ୍ ବିଷ୍ଣୁଅବତାର । ରାବଣ ଓ ଅନ୍ୟାନ୍ୟ ଦୁଷ୍ଟ ଅସୁରଙ୍କୁ ମାରିବା ପାଇଁ ବୈକୁଣ୍ଠରୁ ଆସି ରାମଚନ୍ଦ୍ର ହୋଇ ଜନ୍ମିଥିଲେ । ରାବଣାଦି ଅସୁରମାନେ ମଲେ । ଜଗତରେ ଶାନ୍ତି ଖେଳିଗଲା । ଦେବତାମାନେ ବିଷ୍ଣୁଙ୍କୁ ଫେରି ପାଇବାକୁ ବ୍ୟସ୍ତ ହୋଇ ଉଠିଲେ । ସେମାନେ ଶ୍ରୀରାମଙ୍କ-ଠାକୁ ଏ କଥା ଜଣାଇବା ପାଇଁ କାଳ ପୁରୁଷଙ୍କୁ ପଠାଇଲେ । କାଳ ଅଯୋଧ୍ୟାକୁ ଯାଇ ରାମଙ୍କୁ କହିଲେ—'ପ୍ରଭୋ ! ଆପଣଙ୍କୁ ଗୋଟିଏ ଗୁପ୍ତ କଥା କହିବାକୁ ଆସିଛି । ଗୋଟିଏ କୋଠରିରେ ଦୁହେଁ ବସିବା—ଆଉ କେହି ରହିବେ ନାହିଁ । ଲକ୍ଷ୍ମଣ ଦ୍ୱାର ଜଗି ରହନ୍ତୁ । ଆମର ଗୁପ୍ତ କଥାବାର୍ତ୍ତା ଚାଲିବାବେଳେ ଆମ ପାଖକୁ କେହି ଯଦି ଆସେ, ତାହା-ହେଲେ ତାହାକୁ ଆପଣ ନିଜ ହାତରେ ମାରି ଦେବେ । ଏହି ପ୍ରତିଜ୍ଞା କଲେ କଥାଟା କହିବି ।'

ରାମ ସେଇପରି କରିବାକୁ ମାନିଲେ । ଲକ୍ଷ୍ମଣଙ୍କୁ ଏ ପ୍ରତିଜ୍ଞା ଜଣାଇ ଦ୍ୱାରରେ ଜଗାଇଲେ । କାଳ ଓ ଶ୍ରୀରାମଙ୍କ ମଧ୍ୟରେ ଗୁପ୍ତ କଥା ଚାଲିଲା ।

ଏତିକବେଳେ ଦୁର୍ବାସା ବୋଲି ଜଣେ ଋଷି ଅଯୋଧ୍ୟାରେ ପହଞ୍ଚିଗଲେ । ଏ ମୁନି କ୍ରୋଧର ପୂର୍ଣ୍ଣ ଅବତାର । ସଂସାରରେ ଯେତେ

ବଡ଼ ବଡ଼ କ୍ରୋଧୀ ଲୋକ ଥିଲେ, ସେମାନଙ୍କର ସବୁ କ୍ରୋଧ ନେଇ କୋଧରୂପ ଏଣର ଦୁର୍ବାସାଙ୍କୁ ଗଢ଼ିଥିଲେ । ଏହାଙ୍କୁ ଦୁର୍ବାସା ନ କହି 'କ୍ରୋଧମୁନି' ନାମ ଦେଲେ ବି ଚଳିବ । ଦୁର୍ବାସା ଲକ୍ଷ୍ମଣଙ୍କ ପାଖକୁ ଯାଇ ଜୋରରେ ପଚାରିଲେ—'ଶ୍ରୀରାମ କଣ କରୁଛନ୍ତି ?'

ଲକ୍ଷ୍ମଣ ଋଷିଙ୍କି ପ୍ରଣାମ କରି ଉତ୍ତର କଲେ—କାଳ ଓ ରାମ କୌଣସି ଗୁପ୍ତ କଥାବାର୍ତ୍ତା କରୁଛନ୍ତି ।

ଦୁର୍ବାସା:—ତୁମେ ଏ ମୁହୂର୍ତ୍ତରେ ଯାଇ ମୁଁ ଆସିଚି ବୋଲି ରାମଙ୍କୁ ଜଣାଅ ।

ଲକ୍ଷ୍ମଣ:— ଆଜ୍ଞା କ୍ଷମା କରନ୍ତୁ । ଏବେ ଭିତରକୁ ଯିବାକୁ ହୁକୁମ ନାହିଁ । ଯେ ଯିବ, ସେ ରାମଙ୍କ ହାତରେ ମରିବ । ଆପଣ ଟିକେ ଅପେକ୍ଷା କରନ୍ତୁ ।

ଦୁର୍ବାସା:—ଲକ୍ଷ୍ମଣ ! ଦୁର୍ବାସାକୁ ଚିହ୍ନିଚ ତ ! ଏଇକ୍ଷଣି ରାମଙ୍କ ସଙ୍ଗେ ମୋର ଦେଖା କରିବା ନିତାନ୍ତ ଦରକାର । ଚଞ୍ଚଳ ଯାଇ ଖବର ଦିଅ । ନ ହେଲେ ଅଯୋଧ୍ୟାତମାମ ଭସ୍ମ କରି ଦେବି । ସାବଧାନ !

ଲକ୍ଷ୍ମଣ ଜାଣନ୍ତି, ଦୁର୍ବାସାଙ୍କ ଶାପରେ ସତକୁ ସତ ଅଯୋଧ୍ୟାର ସର୍ବନାଶ ହେବ । ଭାବିଲେ—'ଏବେ ଭିତରକୁ ଯିବାକୁ ଶ୍ରୀରାମ ମନା କରିଛନ୍ତି । ଯେ ଯିବ, ତାହାକୁ ମାରିଦେବେ ବୋଲି ସତ୍ୟ କରିଛନ୍ତି । ଗଲେ ମରିବି । ନ ଗଲେ ମୁନିଙ୍କ କ୍ରୋଧରେ ଅଯୋଧ୍ୟା ଛାରଖାର ହୋଇ ଯିବ । ମୁଁ ପଛେ ଯାଇ ମରିବି— ଅଯୋଧ୍ୟାର ସର୍ବନାଶ କରିବି ନାହିଁ । ଜଣେ ଯାଉ, ଅଯୋଧ୍ୟା ରହୁ ।'

ଏହା ବିଚାରି ଲକ୍ଷ୍ମଣ ରାମଙ୍କ ନିକଟରେ ଯାଇ ଦୁର୍ବାସା ଆସିଥିବା କଥା ଜଣାଇଲେ । କାଳ ଅନ୍ତର୍ଦ୍ଧାନ ହୋଇଗଲେ । ଅତିଶୟ ଦୁଃଖରେ ରାମ ମୁଣ୍ଡ

ଧରି ବସିଲେ ! କାଳପୁରୁଷଙ୍କ କଥାରେ ପଡ଼ି ସତ୍ୟ କରି ପକାଇଛନ୍ତି । ଲକ୍ଷ୍ମଣଙ୍କୁ ନ ମାରିଲେ ସତ୍ୟଭଙ୍ଗ ହେବ । ପ୍ରାଣାଧିକ ଭାଇକି ମାରିବାକୁ ହାତ ଉଠିବ କିମିତି ? କଣ କରିବେ କିଛି ବୁଝି ପାରିଲେ ନାହିଁ । ଅବାକ୍ ହୋଇ ଲୁହ ଗଡ଼ାଇ ଚାହିଁଦେଲେ । ଲକ୍ଷ୍ମଣ ଛାତି ଦେଖାଇ ଦେଇ କହିଲେ—'ପ୍ରଭୋ, ଦୁଃଖ କରନ୍ତୁ ନା । ମୋତେ ମାରି ସତ୍ୟରକ୍ଷା କରନ୍ତୁ ।'

ଶ୍ରୀରାମ ବଶିଷ୍ଠଙ୍କୁ ସେଠାକୁ ଡକାଇ ପରାମର୍ଶ ଲୋଡ଼ିଲେ । ବଶିଷ୍ଠ କହିଲେ—'ମଲା ଗଲା ଦୁଇ କଥା ସମାନ । ଲକ୍ଷ୍ମଣଙ୍କୁ ନ ମାରି ତ୍ୟାଗ କରନ୍ତୁ । ସେ ଆଉ କାହାକୁ ଦେଖା ନ ଦେଇ ଏଇକ୍ଷଣି ବନକୁ ଚାଲି ଯାନ୍ତୁ ।'

କଥାଟା ଶ୍ରୀରାମଙ୍କ ମନକୁ ପାଇଲା । ସେ ଅଯୋଧ୍ୟା ତ୍ୟାଗ କରିବାପାଇଁ ଲକ୍ଷ୍ମଣଙ୍କୁ କହିଲେ । ଏ କଥା କହିଲା ବେଳକୁ ତାଙ୍କ ଦେହରେ ଯେପରି ପ୍ରାଣ ନ ଥାଏ । ଲକ୍ଷ୍ମଣ ଶ୍ରୀରାମଙ୍କ ପାଦରେ, ପରେ ବଶିଷ୍ଠଙ୍କ ପାଦରେ ସାଷ୍ଟାଙ୍ଗ ପ୍ରଣାମ କଲେ । ଉଠି କାନ୍ଦି କାନ୍ଦି 'ଯାଉଚି' ବୋଲି କହି ସେଠାରୁ ଚାଲିଗଲେ—ଘର ଭିତରକୁ ଆଉ ଗଲେ ନାହିଁ, କାହା ସଙ୍ଗେ ଆଉ ଦେଖା କଲେ ନାହିଁ । ଲକ୍ଷ୍ମଣଙ୍କର 'ଯାଉଚି' ପଦ ଶୁଣିଦେବା ମାତ୍ରକେ ଶ୍ରୀରାମଙ୍କର ପ୍ରାଣ ଶୁଖିଗଲା, ହୃଦୟ ଫାଟିଗଲା । ସୀତାଙ୍କୁ ହରାଇ ତାଙ୍କର ଯେତିକି ଦୁଃଖ ହୋଇଥିଲା, ଲକ୍ଷ୍ମଣଙ୍କୁ ଚିର ଦିନ ପାଇଁ ଛାଡ଼ି ଦେଇ ତାଙ୍କର ତା'ଠାରୁ ଦୁଇ ଗୁଣ ଶୋକ ବଢ଼ି ଉଠିଲା । ଶୀଘ୍ର ବୈକୁଣ୍ଠକୁ ବାହୁଡ଼ିବା ପାଇଁ କାଳ ତ କହି ଯାଇଛନ୍ତି । ଏଣେ ଲକ୍ଷ୍ମଣ ଚାଲିଗଲେ । ଆଉ ବିଳମ୍ବ ନ କରି ସଂସାର ଛାଡ଼ିବାକୁ ଶ୍ରୀରାମ ମନେ ମନେ ସ୍ଥିର କରିଦେଲେ ।

ଲକ୍ଷ୍ମଣ ରଥରେ ବସି ସରଯୂନଈ କୂଳେ ଯାଇ ପହଞ୍ଚିଲେ । ରଥ-ଚାଳକଙ୍କୁ ବିଦାୟ ଦେଇ ନଈରେ ପଶିଲେ । ଆଚମନ କରି ସାରି ତୀରକୁ ଉଠିଲେ । ହାତ ଯୋଡ଼ି ନିଶ୍ୱାସ ବନ୍ଦ କରି ମହା ଯୋଗରେ ବସିଲେ । ଦେବତାମାନେ ତାଙ୍କ ମୁଣ୍ଡରେ ପୁଷ୍ପ ବୃଷ୍ଟି କଲେ । କିଛି ଦିନ ପରେ ଲକ୍ଷ୍ମଣଙ୍କ ଦେହରୁ ପ୍ରାଣ ବାୟୁ ଉଡ଼ିଯାଇ ବୈକୁଣ୍ଠରେ ପଶିଲା । ଲକ୍ଷ୍ମଣଙ୍କର ସବୁ ସରିଲା ।

ଶ୍ରୀରାମ ଦେହ ତ୍ୟାଗ କରିବାକୁ ପ୍ରସ୍ତୁତ ହେଲେ । ଏ ଖବର ଜଗତ ତମାମ ବ୍ୟାପିଗଲା । ଶ୍ରୀରାମ ବିଭୀଷଣ, ସୁଗ୍ରୀବ, ହନୂମାନ ପ୍ରଭୃତିଙ୍କୁ ଡକାଇଲେ । ପରେ ପୁଅ ଓ ପୁତୁରାମାନଙ୍କୁ ତାଙ୍କ ବନ୍ଧୁ ଉପଦେଶ ଦେଲେ । ଭରତ ଓ ଶତ୍ରୁଘ୍ନଙ୍କୁ ସଙ୍ଗେ ନେଇ ସରଯୂ ନଦୀ ତୀରରେ ଯାଇ ପହଞ୍ଚିଲେ । ବିଭୀଷଣ ପ୍ରଭୃତି, ଆଉ ଅଯୋଧ୍ୟାର ସମସ୍ତ ପ୍ରଜା ତାଙ୍କ ପଛେ ପଛେ ଯାଇ ସେଠାରେ ରୁଣ୍ଡ ହେଲେ । ରାମ, ଭରତ ଓ ଶତ୍ରୁଘ୍ନ ବଶିଷ୍ଠଙ୍କୁ ପ୍ରଣାମ କରି, ସେଠାରେ ରୁଣ୍ଡ ହୋଇଥିବା ଲୋକଙ୍କ ନିକଟରୁ ଚିର ବିଦାୟ ନେଇ ନଈ ଭିତରେ ପଶିଲେ । ସମସ୍ତେ 'ରାମ ରାମ' ଧ୍ୱନି କରି ଉଠିଲେ । ସ୍ୱର୍ଗରୁ ରାଶି ରାଶି ପୁଷ୍ପ ବୃଷ୍ଟି ହେଲା । ଗନ୍ଧର୍ବ ଅପ୍ସରାମାନେ ନୃତ୍ୟ ଗୀତରେ ଲାଗିଲେ । ଦେଖୁଁ ଦେଖୁଁ ତିନି ଭାଇ ପାଣିରେ ବୁଡ଼ି ଦେହ ତ୍ୟାଗ କରି ଦେଲେ—ସ୍ୱର୍ଗକୁ ଚାଲିଗଲେ ।



# ଶେଷ କଥା

ଲବକୁଶ ଅନେକ ବର୍ଷ ରାଜୁତି କରି ସଂସାରରୁ ମେଲାଣି ନେଇଥିଲେ । ସବେ ଚଳଲେ କାଳବଳେ, କଥା ରହିଛି ମହୀତଳେ ।

କେହି କେହି କହନ୍ତି, ପୁରାଣ ସବୁ ମିଛ । ଆଉ କେତେକ ଲୋକ କହୁଛନ୍ତି ଯେ, ରାମାୟଣ ଓ ମହାଭାରତରେ ଯେଉଁ ବଡ଼ ବଡ଼ ରାଜାମାନଙ୍କର ଚରିତ ଲେଖା ଅଛି, ସେମାନଙ୍କ ବଂଶର ରାଜାମାନେ ଆଜ ଯାଏ ଆମ ଦେଶରେ ରାଜପଣ କରୁଛନ୍ତି । ଏ କଥାଟା ମିଛ ବୋଲି ଉଡ଼ାଇ ଦେବାକୁ ବାଟ ନାହିଁ ।

ଆମ ଓଡ଼ିଶାର ବହୁ ଦୂର ଉତ୍ତର ପଶ୍ଚିମ ଭାଗରେ ଉଦୟପୁର ବୋଲି ଗୋଟିଏ ରାଜ୍ୟ ଅଛି । ସେଠାର ରାଜାଙ୍କୁ 'ରାଣା' କହନ୍ତି । ଉଦୟପୁର ରାଣାମାନେ କୁଶଙ୍କ ବଂଶରେ ଜନ୍ମିଛନ୍ତି । ସେଠାର ଫତେସିଂହଜୀ ବୋଲି ଜଣେ ରାଜା ଆଜକୁ ଅଳ୍ପ ଦିନ ହେଲା ମରିଛନ୍ତି । ଏ ବର୍ଷ ମେ ମାସରେ ତାଙ୍କର କାଳ ହୋଇଗଲା ।




ପ୍ରିଣ୍ଟର:—ଶ୍ରୀ ଦାମୋଦର ରଥ, ଷ୍ଟାର ପ୍ରେସ୍, ବ୍ରହ୍ମପୁର

# ବାଳ ବିନୋଦ ଗ୍ରନ୍ଥମାଳା

| | | | |
|---|---|---|---|
| ୧ | ଗୋପଲୀଳା | ଶ୍ରୀ ଦାମୋଦର ମିଶ୍ର | ଟ ୦ ।୵ |
| ୨ | ପୁରାଣ କଥା ୧ମ ଭାଗ | ଜନୈକ ଶିକ୍ଷକ | ଟ ୦ ୵ |
| ୩ | ମାର୍କଣ୍ଡେୟ | ଶ୍ରୀ ରାମଚନ୍ଦ୍ର ଆଚାର୍ଯ୍ୟ ବି. ଏ. | ଟ ୦ । |
| ୪ | ପୁରାଣ କଥା ୨ୟ ଭାଗ | ଜନୈକ ଶିକ୍ଷକ | ଟ ୦ ୵୬ |
| ୫ | ସୀତାଦେବୀ | ଶ୍ରୀ ଜଗନ୍ନାଥ ମହାପାତ୍ର | ଟ ୦ । |
| ୬ | ଟିକି ରାମାୟଣ | ଶ୍ରୀ ଦାମୋଦର ମିଶ୍ର | ଟ ୦ ।୵ |
| ୭ | ଟିକି ମହାଭାରତ | ଶ୍ରୀ ଗୋଦାବରୀଶ ମହାପାତ୍ର | ଟ ୦ ୳୵ |
| ୮ | ବାଳବୀର ଅଭିମନ୍ୟୁ | ପଣ୍ଡିତ ଶ୍ରୀ ଲିଙ୍ଗରାଜ ମିଶ୍ର ଶାସ୍ତ୍ରୀ | ଟ ୦ ୳ |
| ୯ | ବିଶ୍ୱାମିତ୍ର | ଶ୍ରୀ ବାସୁଦେବ ମହାପାତ୍ର | ଟ ୦ । |
| ୧୦ | କର୍ଣ୍ଣ | ,, | ଟ ୦ । |
| ୧୧ | ଓଡ଼ିଶାର ଇତିହାସ-କଥା | ଶ୍ରୀ ଉଦୟନାଥ ଷଡ଼ଙ୍ଗୀ | ଟ ୦ । |
| ୧୨ | ଧ୍ରୁବ | ଶ୍ରୀ ଦୟାନିଧି ମିଶ୍ର ବି.ଏ. ଏଲ୍. ଟି. | ଟ ୦ ୶୬ |
| ୧୩ | ପୁରାଣକଥା-ଲହରୀ (୧ମ ତରଙ୍ଗ) | ଶ୍ରୀ ଗଙ୍ଗାଧର ମହାପାତ୍ର | ଟ ୦ ୳ |
| ୧୪ | ଯୁଧିଷ୍ଠିର | ଶ୍ରୀ ନୀଳକଣ୍ଠ ଦାଶ | ଟ ୦ ୳ |
| ୧୫ | କୃଷ୍ଣା | ଶ୍ରୀ ଜଗନ୍ନାଥ ମହାପାତ୍ର | ଟ ୦ । |
| ୧୬ | ପ୍ରୀତିଗଳ୍ପ | ଶ୍ରୀ ପୀତାମ୍ବର କର ବି. ଏ. ଏଲ. ଟି. | ଟ ୦ ।୵ |
| ୧୭ | ଭରତ | ଶ୍ରୀ ନୀଳକଣ୍ଠ ଦାଶ | ଟ ୦ ।୵ |
| ୧୮ | ଅନସୂୟା | ଶ୍ରୀ ରାମଚନ୍ଦ୍ର ଆଚାର୍ଯ୍ୟ ବି. ଏ | ଟ ୦ ୳ |
| ୧୯ | ହରିଶ୍ଚନ୍ଦ୍ର | ଶ୍ରୀ ଦାମୋଦର ମିଶ୍ର | ଟ ୦ ।୵ |
| ୨୦ | ପୁରାଣକଥା ୩ୟ ଭାଗ | ଜନୈକ ଶିକ୍ଷକ. | ଟ ୦ ୶ |
| ୨୧ | ରଘୁ | ଶ୍ରୀ ଶିବପ୍ରସାଦ ଦାଶ | ଟ ୦ । |
| ୨୨ | ସରଳ ରଘୁବଂଶ | ,, ,, | ଟ ୦ ।୵ |
| ୨୩ | ବୁଦ୍ଧ | ,, ,, | ଟ ୦ ୶ |
| ୨୪ | ହିତୋପଦେଶ-କଥା | ଜନୈକ ଶିକ୍ଷକ | ଟ ୦ । |
| ୨୫ | ଭାରତର ଇତିହାସ କଥା— | ଶ୍ରୀ ଉଦୟନାଥ ଷଡ଼ଙ୍ଗୀ | ଟ ୦ ୳୵ |
| ୨୬ | ଚନ୍ଦ୍ରହାସ | ଶ୍ରୀ ବାଙ୍କନିଧି ପଟ୍ଟନାୟକ | ଟ ୦ ୶ |
| ୨୭ | ଋଷିଜୀବନୀ ୧ମ ଖଣ୍ଡ | ଶ୍ରୀ ନୀଳକଣ୍ଠ ଦାଶ | ଟ ୦ ୳୵ |
| ୨୮ | ବଳ କୃଷ୍ଣ | | ଟ ୦ ।୵ |